ପ୍ରଥମ ସଂସ୍କରଣ
୧୯୭୧

ପ୍ରକାଶକ
ଓଡ଼ିଶା ବୁକ୍ ଏମ୍ପୋରିୟମ୍
କଟକ-୨

ପ୍ରଚ୍ଛଦ ଶିଳ୍ପୀ
ଶ୍ରୀ ଅସୀମ ବସୁ

ମୁଦ୍ରାକର
ସୁଲେଖା ପ୍ରିଣ୍ଟର୍ସ
କଟକ-୨

ମୂଲ୍ୟ—ଦେଢ଼ ଟଙ୍କା

ଝାଞ୍ଜିରୀମଙ୍ଗଳା, କଟକ—୧
୧୫ ଅଗଷ୍ଟ, ୧୯୭୧

**ଗଳ୍ପଗୁଡ଼ିକ** ଉପରେ ଅନେକ ମହାନ୍-ସ୍ରଷ୍ଟାଙ୍କ ସୃଷ୍ଟିର ପ୍ରଭାବ ଯେ ପଡ଼ିନାହିଁ, ତାହାନୁହେଁ । ସେମାନଙ୍କ ସୃଷ୍ଟିର ଦର୍ଶନ ଯେତେବେଳେ ମୋ ମନକୁ ଗଭୀର ଭାବେ ଆନ୍ଦୋଳିତ କରିଥିଲା ସେତେବେଳେ ସେହି ମହାନ୍-ସୃଷ୍ଟିର ଆଲୋକକୁ ମୁଁ ପ୍ରତ୍ୟାଖ୍ୟାନ କରି ପାରିଲି ନାହିଁ—କରିଥିଲେ ଅନ୍ୟାୟ କରିଥାନ୍ତି । ତେଣୁ ସେମାନଙ୍କ ସଙ୍କେତର ପ୍ରତିଧ୍ୱନି ମୋର କେତୋଟି ଗଳ୍ପରେ ସୁସ୍ପଷ୍ଟ ।

ଜୀବନ ଯେତେବେଳେ ଥିଲା ରାଜନୈତିକ-ଝଞ୍ଜାଳମୟ, ଓଡ଼ିଶାର ପୁର-ପଲ୍ଲୀ, ପଥ-ପ୍ରାନ୍ତରେ ଯେତେବେଳେ ମୁଁ ଘୁରି ବୁଲୁଥିଲି ଏକ ବାମପନ୍ଥୀର ଲୋହିତ ନିଶାଣ ଧରି, ସେତେବେଳେ କେତେକ ବାସ୍ତବ ଘଟଣାର ତାଡ଼ନାରେ କେତୋଟି ଗଳ୍ପର ଜନ୍ମ । ଆଜିର ଜୀବନ ସେତେବେଳେ ଥିଲା ନାହିଁ । ଏ ସବୁର କାହାଣୀ ଏକ ନାଟକୀୟ ପରିବର୍ତ୍ତନର କାହାଣୀ ।

[signature]

ଏଥିରେ ଅଛି—

ଯଥା ରାବଣସ୍ୟ ମନ୍ଦୋଦରୀ
ମରୀଚିକା
ମୃତ ଅରୁଣିମା
ଜନପଦର ଛନ୍ଦ
ଦାଗ
ଗ୍ରାସ

ଏହି ଲେଖକଙ୍କ ଅମର ଲେଖାମାରୁ ପ୍ରକାଶ ପାଇଛି—

* ଗୋଆଯାତ୍ରୀ (ଭ୍ରମଣ)
* ଅନୁଭୂତି ( ,, )
* ଚଳନ୍ତିକା ( ଗଳ୍ପ )
* ପରାସ୍ତ ସୈନିକ ( ଗଳ୍ପ )
* ଅବସାନ (ଉପନ୍ୟାସ)
* ଗ୍ରାସ ( ଗଳ୍ପ )
* ପଥ-ପ୍ରାନ୍ତର କବିତା ( କବିତା )
* ଚରମ ପନ୍ଥ ( କବିତା )
* ପ୍ରକାଶୋନ୍ମୁଖୀ—
* ଶିଥିଳ-ବଲ୍‌ଗା ( କବିତା )



## ଯଥା ରାବଣସ୍ୟ ମନ୍ଦୋଦରୀ

"ହଇଏ ଶୁଣୁଛ ? ଶୁଣୁଛ ନା କ'ଣ ମ ??"

"ଓଃ, କା-ଇଁ ଗୋଟାଏ ସେମିତ ପାଟିଠା କରଚ ? ଆଁୟୁ ??"

"ମଲ ! ଡାକଲତ···ପାଟି କଅଣ କଲମ ?"

"କ'ଣ ? କହୁବଟି !" ବନୁବାବୁ ବରଷ୍ଟରେ ଉଠି, ବସିପଡ଼ି କହିଲେ, "ତମର କ'ଣ ନଇତ ସେଇ କଥା ନ ପଗ୍ଭରିଲେ ପାଇଖାନା ସଫା ହୁଏନ ? ନା କ'ଣ ?? ସେଃ !"

ଧାନ ଉସୁଆଁ ହାଣ୍ଡି ପରି ମୁହଁକୁ ବର୍କାଟିଆ କରି ଗୀତାବୋଉ ନଥିକନ ବସିପଡ଼ିଲେ ସ୍ୱାମୀ ବନୁବାବୁଙ୍କ ପଲଙ୍କ ଉପରେ । ବସି, ପଣତକାନରେ ଆଖିରୁ ଲୁହ ପୋଛିବାର ଉପକ୍ରମ କଲେ । ବନୁବାବୁଙ୍କ ଛାତିରୁ ଯେମିତ ଅଟଡ଼ାଏ ନଆଁ ଖସିପଡ଼ିଲା ! ସେ ସହଧର୍ମିଣୀ ଗୀତାବୋଉଙ୍କ ପାଖକୁ ଲାଗିଯାଇ, ତାଙ୍କ ମୁହଁପାଖକୁ ନିଜ ମୁହଁ ନେଇ ହସିଦେଲେ ଫେଁ କିନ ।

ମୁହଁ ଛୁଟିଦେଇ ଗୀତାବୋଉ କହିଲେ, "ଛି, ତ-ମ-ହ-ସ··· ଅ···ଅ···"

"................"

"କହୁଚ, ମୋ ସାଙ୍ଗରେ ଲାଗନା, ହୁଁ···ଅଁ···ଅଁ··· !"

"ହେଇତନ ! ଶୁଣ !!"

"ମୁଁ କିଛୁ ଶୁଣିବ ନାହିଁ ।" ଉଠି ଗ୍ଳଲିଯାଉଥିଲେ ଗୀତା-ବୋଉ—

—ବନୁବାବୁ ଖପ୍‌କିନା ଧରି ପକେଇଲେ ତାଙ୍କ ନୁଗା କାନିକି । ଫଳରେ ଗୀତାବୋଉଙ୍କ ମଥା ଓ ବକ୍ଷ ଉପରୁ ଖସିଗଲା ଆବରଣ ।

"ଆରେ ! ଓଃ ! ଗ୍ଳଡ଼ମ !!!"

"..............."

"..............."

ତୁଟିଗଲା ଗୀତାବୋଉଙ୍କ ଧନୁର୍ଭଙ୍ଗ ପଣ । ସ୍ୱାମୀଙ୍କ ଅନୁରୋଧରେ ସେ ପୁଣି ଯାଇ ବସିଲେ ପଲଙ୍କ ଉପରେ । ବସି କହିଲେ, "ମୁଁ ତ ପଡ଼ୁରେ ବୋଲି ମୋର ହୁଏ ଦୋଷ ! ବଡ଼ ଲା ବାଡ଼ୁଅ ଝିଅକୁ ଆଉ କେତେ ଦିନ ଘରେ ରଖିବ ?"

"ଆଃ !" ନଜର ପ୍ରଜାପତିଆ ନିଶହଲକୁ ଟିକେ ସାଉଁଳେଇ ଦେଇ ବନୁବାବୁ କହିଲେ, "ବୁଲି ବୁଲି ତ ଥେଯ୍ଥା ହେଲଣି ! କାନ ଥେଲେ ନୋଳି ନାହିଁ, ନୋଳି ଥେଲେ କାନ ନାହିଁ, ଯୋଉଠି ବି ବରଘର ଯୁଟୁଚି, ସିଏ କହୁଚି, ତମ ଘରଟାଯାକ ମୁଁ ସବୁ ମୁଣ୍ଡେଇ ନେବ । ସାଇକେଲ ଦିଅ, ଘଣ୍ଟା ଦିଅ, ଜମି ଦିଅ, ଟଙ୍କା ଦିଅ, ତାହେଲେ ଯାଇ ବାହାଘର ହବ । ଆରେ ବାବା ! ଝିଅଟିଏ ଯେତେବେଳେ ଆମର ଅଛି, ଆମେ କ'ଣ ତାକୁ ଦବୁ ନାହିଁ ? ତମେ ତାହାହେଲେ ସାଇକେଲ, ଘଣ୍ଟା, ଟଙ୍କା, ଜମିକୁ ବାହା-ହବ ନା ଝିଅକୁ ବାହା ହବ ?? ହ୍ୟାବ୍ ଅଶିକ୍ଷିତ··· !!"

"କଥାଟାଏ ତମୁକୁ ପଚୃରିଲେ ତମେ ଏତେ ବଜର ବଜର ହୁଅ କାହିଁକି ? ମୁଁ ପଚୃରୁଚି, ଯାଇଥିଲ ପରା ଅମର ପାଟଣା ? କ'ଣ ହେଲା ??"

"ହବ ଆଉ କ'ଣ ? ମୁଁ ତ କଥାର୍ଡ଼ି କରି ଆଇଚି !"

"ବରି ପରା କୁଆଡ଼େ ବି. ଏ. ପଢ଼ୁଚି ?"

"ହୁଁ !"

"କ'ଣ ? ଦେଖିବାକୁ କେମିତି ?"

"ଆରେ ଯାଃ ! ମୁଁ ପରା ତା' ଫଟ ଆଣିଚି !!"

ଆନନ୍ଦରେ ଅଧୀର ହୋଇ ଗୀତାବୋଉ ଧୁଞ୍ଜିଗଲେ ବନୁ-ବାବୁଙ୍କର ଆହୁରି ପାଖକୁ । କହିଲେ, "କାହିଁ ? ଦେଖେଁ !"

ବନୁବାବୁ ମୁରୁକିହସା ମାରି କହିଲେ, "ଦେଖଉଚି । ଦବଟି ଠିକେ ଆଖିଟା ଚପି ! ଓଃ ! କି ବଢ଼ିଆ ବନ୍ଧୁଚିଚେ !!"

"ମଲା ମୋର !" ମୁହଁ ମୋଡ଼ିଦେଇ ଗୀତାବୋଉ କହିଲେ, "ସବୁଦିନେ ତମର ସେଇ ନବକିଆ ଖୋଇ !!"

" ଆରେ ଦିଅମ ଆଗ !! ଓଃ, ବାପାଲେ ମା···ଆ···ଆ···"

ବାଧ୍ୟ ହୋଇ ଆଖି ଚପି ବସିଲେ ଗୀତାବୋଉ । ଚପୁଚପୁ କହିଲେ, "ହେଇଦେଲ ! ତୁମୁକୁ ମୋ'ରାଣ, ଗୀତାକୁ ଏ ବର୍ଷ ଯେମିତି ହେଲେ ଉଠେଇ ଦିଅ !"

"ଆରେ ଆଉ ଟିକେ ତଳକୁ ! ହଁ, ସେଇ··ସେଇ ଭଙ୍ଗୀ ।"

"ଛ୍ୟାଃ !"

"ହୁଁ, ଆଉଟିକେ ଯୋର୍‌ରେ !"

ମୋଡ଼ାଖିଆ ସରଳା ।

"ଫୁଃଃ !" ଗୋଟାଏ ଦୀର୍ଘ ନିଶ୍ୱାସ ପକେଇ ବନୁବାବୁ ସ୍ତ୍ରୀ ଗୀତାବୋଉଙ୍କ ଉଦ୍ଦେଶ୍ୟରେ କହିଲେ, "ବୁଝିଲ ?"

ଗୀତାବୋଉ ପଚାରିଲେ, "କଅଣ ?"

"ବାହାଘର ଏକେଦମ୍ ଠିକ୍ କରି ଦେଇ ଆସିଛି ।"

"କ'ଣ ମୋ ସାଙ୍ଗରେ ଖେଳୁଛ ନା କ'ଣ ?"

"ହଉ, ଗୁଡ଼ଃ ! ଫଟୋ ଦେଖିବ ପରା ? ହେଇଟିକି ନିଅ ! ଦେଖ !!" ତକିଆ ତଳୁ ଗୋଟିଏ ପାସ୍‌ପୋର୍ଟ୍ ସାଇଜ୍‌ର ଫଟୋ କାଢ଼ି ବନୁବାବୁ ବଢ଼େଇ ଦେଲେ ଗୀତାବୋଉଙ୍କ ହାତକୁ । ଫଟୋଟିକୁ ହାତକୁ ନେଇ ଗୀତା ବୋଉ ତାକୁ ଅପଲକ ଆଖିରେ ଚାହିଁରହିଲେ । ବୟସ ଚବିଶି-ପଚିଶି ପାଖାପାଖି, ଆଖିରେ ଚଷମା, ନାକତଳେ ସ-ରୁ ହୋଇ ନିଶ । ସାକ୍ଷାତ ଯେମିତି ଝଷକେତନ !!

"କ'ଣ ମନ ମାନୁଛି ??" ବନୁବାବୁ ପଚାରିଲେ ।

ଗୀତାବୋଉ କିଛି କହିଲେ ନାହିଁ—ତାଙ୍କର ଫଟୋ ଦେଖା ସରି ନ ଥିଲା ।

"କଉ ! ତପସ୍ୟା କଲକି ?"

କ'ଣ କହି ଆସୁଥିଲେ ଗୀତାବୋଉ, ସହସା ଝିଅ ଗୀତା ଡ଼ାକ ଶୁଭିଲା, "ବୋ-ଉ !!..."

ତତ୍‌କ୍ଷଣାତ୍ ଫଟୋଟିକୁ ଲୁଗା କାନିତଳେ ଲୁଚେଇ ଦେଇ ଗୀତାବୋଉ ଜବାବ ଦେଲେ, "କଅଣ କଲେ ?"

"ଖାଇବାକୁ ଦେଇ ଯା !"

"ଗୃ-ଆ-ଲେ ।"

ଗୀତାବୋଉ ଚାଲି ଯାଉଥିଲେ—ପଛରୁ ବନୁବାବୁ ପାଟିକଲେ, "ହଇଓ !"

"କଅଣ ମ ?" ଗୀତାବୋଉ ବୁଲି ପଡ଼ି ପଚାରିଲେ ।
"ଗୃହିଣୀଙ୍କେ ବାଧାଉଛନ୍ତି !"
"ଭେଷେଇ ପତ୍ର ସରିଲାଣି ! ଆଣିବ ଖାଇବାକୁ ?"
"ହ-ଉ-ଆ-ଣ !"

*          *          *          *

ମୈଥିଳୀପୁରର ଜମିଦାର ବନୁବାବୁ ।

ବାନାମ୍ବର ପଟ୍ଟନାୟକ ଓରଫ 'ବନବାବୁ' । ଫାଣୁଆଁ ଫାଣୁଆଁ ପେଶୀଯୁକ୍ତ ବାହୁ, ଚଉଡ଼ା ଛାତି, ବଡ଼ ପାକଲ ତାଳପରି ମୁଣ୍ଡ । ନାକଟି ଠିକେ ଲମ୍ବା, ଅବଶ୍ୟ ଶାଗୁଣା ଥଣ୍ଟପରି ନୁହେଁ ! ଠିକ୍ ତା'ରି ତଳକୁ ଅତି ଘନ ଗୁମ୍ଫରେ ଅଛି ନିଶ ହଳେ—ପ୍ରଜାପତିଆ ନିଶ । କଣ୍ଠସ୍ୱର ମନ୍ଦ୍ର-ମେଘର ଗର୍ଜନ ପରି ।

ଜମିଦାରୀ ଗୁଡ଼ି ବାନାମ୍ବର ପଟ୍ଟନାୟକ ଓରଫ 'ବନୁବାବୁ'-ଙ୍କର ଖାଲି ନିଜଚାଷ ଜମି ହଉଚି ଦୁଇଶ' କୋଡ଼ିଏ ଏକର—ଏଗାର ବାଟି । ପୁଅ ତାଙ୍କର ମୋଟେରୁ ନାହିଁ । ଗୋଟିଏ ବୋଲି ଝିଅ—ଗୀତା । ଦେଖିବାକୁ ରୂପରେ ଯେମିତି, ଗୁଣରେ ବି ସେଇମିତି !! କିନ୍ତୁ ତା' ପାଇଁ ଏପର୍ଯ୍ୟନ୍ତ ଭଲ ପାତ୍ରଟିଏ ଯୁଟୁନାହିଁ । ସେଇଥିପାଇଁ ବନୁବାବୁଙ୍କ ସ୍ତ୍ରୀ 'ଗୀତାବୋଉ' ଙ୍କ ମନ ଭାରି ଖରାପ୍ ।

ବନୁବାବୁ ବଦ୍‌ରାଗୀ ଯିମିତି, ଏକ୍‌ଜିଦିଆ ବି ସେଇମିତି ! ଯାହା ବୁଝିଥିବେ ସେୟା । "ତାଙ୍କୁ ଠକେଇଲା ବାଲା ପୁଅ ଏଜଗତରେ ନାହିଁ" ବୋଲି ଲୋକେ କହନ୍ତି । ମୁଖାକୃତି ତାଙ୍କର ଅତ୍ୟନ୍ତ ଗମ୍ଭୀର । କପାଳରେ ଧାନକଆଁରି ହାଡ଼ପରି ତିନଟା ଗାର—ସତେ ଯିମିତି ସାମନ୍ତବାଦୀ ଆଭିଜାତ୍ୟର ଜୟଗାନ କରି ଲମ୍ବିଯାଇଛି ଦୂରରୁ ଦୂରକୁ !

ସତୁକ ଭିତରେ ବନୁବାବୁଙ୍କର ପ୍ରଧାନ ସଉକ ହେଉଛି ଯୋଡ଼ିଏ । ଗୋଟିଏ ପାନ ଖାଇବା, ଅନ୍ୟଟି ବଗିଚ୍ଚ ଦର୍ଶନ । ବନୁବାବୁଙ୍କର ପାନ ଆଉ କେହି ଭାଙ୍ଗିପାରିବେ ନାହିଁ— ଗୀତା ବୋଉଙ୍କ ଛଡ଼ା । ଯେତେବେଳେ ସେ ଝିଷଣ ରାଗିଯାନ୍ତି, ସେତେବେଳେ ଗୀତାବୋଉ ବଟାରେ ବଟାଏ ପାନଭାଙ୍ଗି ଥୋଇ ଦେଇ ଆସନ୍ତି ତାଙ୍କ ସାମ୍ନାରେ । ଦି' ଗୁରିଖଣ୍ଡ ପାନ ଗାଲେଇ ଦେଲାପରେ ବନୁବାବୁଙ୍କର ରାଗ ଫାଗ କୁଆଡ଼େ ଛୁ— !

ଖଣ୍ଡେ ଭଲ ବଗିଚ୍ଚ ଅଛି ବନୁବାବୁଙ୍କର । ବଗିଚ୍ଚରେ ହରେକ୍ ରକମର ଗଛ ଲାଗିଛି । ମଝିରେ ପୋଖରୀ ଅଛି । ମାଛବି ଅଛନ୍ତି । ଗୁରିଦିନେ ଥରେ ମାଛ ମରାହୋଇ ଆସେ—ପରିବା ବି ପ୍ରତିଦିନ ଝୋଟିଏ ଲେଖାଁ ତୋଳାହୋଇ ଆସେ ! ତେଣୁ ପ୍ରତିଦିନ ବଗିଚ୍ଚ ଦେଖି ନ ଗଲେ ବନୁବାବୁଙ୍କର ଶାନ୍ତି ନାହିଁ ।

ହାତରେ ଛଡାଏ ଉଞ୍ଚର ତଡ଼ା, ଖୋଲା ଦିହରେ, ମୈଥିଲୀପୁର ଗାଁ ଦାଣ୍ଡରେ ଯେତେବେଳେ ଭେଟନଟରନାର ହରଅନ୍ନା ଷଣ୍ଢଭଳି ଭୁଷ୍‌ଭୁଷ୍ ହୋଇ ମାଡ଼ିଯାନ୍ତି ବନୁବାବୁ, ସେତେବେଳେ ତମେ ଦେଖିବ, ତାଙ୍କ ପଛରେ ଦି'ଟା ମଜୁରିଆ ଲୋକ ଧଇଁ ସଇଁ ହେଇ ଦୌଡ଼ୁଥିବେ ! ଜଣେ ମୁଣ୍ଡେଇ ଥିବ ଗୋଟାଏ ବଡ଼ ବେତା, ଆଉ ଜଣେ ଧରିଥିବ ଛଉଳିଆ ଆଉ ପାନବଟା ।

ବନୁବାବୁ ନଇତ ଏଇମିତି ବଗିଚ୍ଚ ଦେଖି ଗଲାବେଳେ ତାଙ୍କ ଆଗରୁ ପଛରୁ କେତେ ଯେ ଦଣ୍ଡବତ ପଡ଼େ ତା'ର ସୁମାର ନାହିଁ । ମିଲିଟାରୀ ଟ୍ରକ୍‌ପରି ତାଙ୍କ ବିରାଟ ବପୁକୁ ଦେଖି ମାଇପେ ସବୁ

କବାଟ ସନ୍ଧରେ ଗଳକର ଅନାନ୍ତ—ବାହାରେ ଥିବା ବୋହୂ-ଦୁଆସୁଣୀମାନେ ହାତେ ଲେଖାଁଏ ଓଢ଼ଣା ଟାଣି ଜାକଜୁକ ହେଇ ଠିଆ ହ'ନ୍ତ ଯାଇ ଗୋଟାଏ ଜାଗାରେ—ସତେ ଯିମିତ ବୁଦାଏ ଲଜକୁଲୀ ନଟା !!

ବନୁବାବୁଙ୍କର ଗତ କୁମ୍ଭକର୍ଣ୍ଣ ଗତ ।

ସିଏ ଗତ କଲାବେଳେ ତାଙ୍କ ଆଗରେ ତାଙ୍କୁ ଗୋଟାଏ କଏ ବେଖାତର୍ କର ଚ଼ାଲଯିବ ନା ଆଗ !! ବଧା ବସ୍ତା ସେଦନ ଏକ ନୂଆ ପଇସା ହୋଇଯିବନାଇଁ ଆଉ !!!

ସବୁଦନେ ସେ ବଗିଚ଼ୁ ଦେଖି ଗଲାବେଳେ ଯୋଉ ଦ'ଟା ଲୋକ ତାଙ୍କ ପଛେ ପଛେ ପାନବଟା, ତଉଲଆ ଆଉ ବେତା ଧର ଦୌଡ଼ନ୍ତ, ତାଙ୍କର ଭିତରୁ ଭିକାରଆ ହଉଚ ଅଖାଡ଼ୁ ନମ୍ବର ଓ୍ୱାନ୍, ଏକେବାରେ ଗଜ । ପ୍ରତ ଚ଼ରଦନେ ଥରେ ସିଏ ନାଗୁଆ କର ତା' ବୁଢ଼ା ବାପକୁ ନ ପିଟିଲେ ତା' ଭାତ ହଜମ ହୁଏନ । ଯଦ ପଚ଼ରବ ସେ କହବ, "ବାପଯିଏ, ସାପସିଏ । ସାପକୁ ଯେମିତ ବଶ୍ୱାସ ନାଇଁ —ବାପକୁ ସେମିତ ବଶ୍ୱାସ ନାଇଁ ।"

ସେଇ ଭିକାରଆ ହଉଚ ବନୁବାବୁଙ୍କର ଡାହାଣ ହାତ । ବନୁବାବୁ ଯଦ 'ଧ' ବୋଲ କହବେ, ସିଏ କାମୁଡ଼ ପକେଇବ । ଜବରଦସ୍ତ୍ ଆଲ୍‌ସେସିଆନ୍ କ ନା !!

ବନୁବାବୁ ବଗିଚୁ ଦେଖି ବାହାରିଲା ବେଳେ ଝିଅ ଗୀତା ପଛରୁ କହିଲା—"ବାପା ! ବଗିଚୁରୁ ମୋପାଇଁ ପିଜୁଳି ଆଣିବ ।"

"ହଉ ।" ବନୁବାବୁ କହିଲେ । ତା' ପରେ ଭିକାରିଆ ଉଦ୍ଦେଶ୍ୟରେ ପ୍ରଶ୍ନ କଲେ, "ହଇରେ ! ପିଜୁଳି ଅଛି ବଗିଚୁରେ ?"

କାନ-ମୁଣ୍ଡା ଆଉଁସି ଭିକାରିଆ ଜବାବ ଦେଲା, "ହଁ, ଆଜ୍ଞା, କଣ ଥିବ ଦିଅଣ୍ଡା ଗଣ୍ଡାଏ ! ଏ ଶଳା ବାଦର (ବାଦୁଡ଼ି) କ'ଣ ରଖୁଚନ୍ତି !!!"

କଲବଲା ଉଡ଼ିଦେଇ ବନୁବାବୁ ଗର୍ଜି ଉଠିଲେ, "ବାଦୁଡ଼ି ଯଦି ସବୁ ଖାଇଗଲେ ତମେ ଶଳାଏ ଅଛ କାହିଁକି ବେ ?"

ବନୁବାବୁଙ୍କ ଗର୍ଜନରେ ଭିକାରିଆ ଚମକି ପଡ଼ିଲା ଥରେ —ଛେପ ଢୋକିଲା ଦି'ଥର । ପାଟିରେ ପାନଖଣ୍ଡେ ପୂରେଇ, ଛତାଟାକୁ ତଳେ ଠକଠକ କରି ବଗିଚୁ ଦେଖିବାକୁ ବାହାରି ଗଲେ ବନୁବାବୁ !

ବଗିଚୁର ଦୁ' ପଣସ ଗଛତଳେ ଠିଆହୋଇ ଲୁଗା ପାଲଟୁ ପାଲଟୁ ବନୁବାବୁ କହିଲେ, "ଯେତେ ଦେଶୀଆଳୁ ବୁଦା ଅଛି ସବୁ ଖୋଳିଦିଅ !" ଏତକ କହି, ନାହି ଉପରୁ ନୁଗାଧଡ଼ି ଖସେଇ, ତଳପେଟରେ ଦି'ଗୁରଟା ଗୁପୁଡ଼ା କଷି, ନିଜ ବଗିଚୁ ପାଖ ଅନାବାଦୀ ଜମିର କିଆଗୋଧା ଆରପଟେ ଯାଇ ପୋଖରୀପାଣି ବସିଲେ ବନୁବାବୁ !

* * *

"ଭିକାରିଆ !"
"ଆଜ୍ଞା — !"
"ପିଜୁଳି ଆଣିଲୁ ?"
"ହଁ ।"
"କାହିଁ ?"
"ଦେଇଛନ୍ତି !" ଭିକାରିଆ ଅଣ୍ଟି ଦେଖେଇଲା ।
"ଯା ! ସାଆନ୍ତାଣୀଙ୍କି ଦେଇଦବୁ !!" କହିଲେ ବନୁବାବୁ,
"ଯା—ଘ'ର ଆଗେରେ ।"

ଭିକାରିଆ ଚାଲିଗଲା ।

ଦୂରରୁ ଗୁମାସ୍ତା ଅଇଁଠ ମାହାନ୍ତଙ୍କି ଦେଖି ବନୁବାବୁ ବଡ଼ ପାଟିରେ କହିଲେ, "କଉ ମାହାନ୍ତଏ ! କ'ଣ ବହୁଦିନ ତ ରହିଗଲ ଝୁଅଘରେ !!"

ପାଖକୁ ଆସି, ଦଣ୍ଡବତ ପକେଇ, ଦନ୍ତବିହୀନ ମାଡ଼ି ଢ'ଟାକୁ ନେଫେଡ଼ଦେଇ ଅଇଁଠ ମାହାନ୍ତ କହିଲେ, "ହେଁ···ହେଁ···ହଁ ଆଜ୍ଞା !"

ବନୁବାବୁଙ୍କ ଘରେ ଗୁମାସ୍ତାଗିରି କରିକରି ଆସି ବାଳ ପାଚିଲାଣି ଅଇଁଠ ମାହାନ୍ତଙ୍କର । ବଡ଼ ଦାର୍ଶନିକ ଲୋକ ମାହାନ୍ତଏ ! ଛଟା ଚଇତନ, କଣ୍ଠରେ ତୁଳସୀ ମାଳ, କାନ୍ଧରେ କୃଷ୍ଣ-ନାମାବଳୀ, ଦେହରେ ବେକବୁଜା ମଠା କୋଟ୍ ।

ଚାଲୁ ଚାଲୁ ବନୁବାବୁ କହିଲେ, "ଆଉ···ଶୁଣିଲଣି ନା ?"
ଅଇଁଠ ମାହାନ୍ତ ପଚାରିଲେ, "କୋଉ କଥା ?"
"ଏଇ ଗୀତା ବାହାଘର·····"
"ହିଁ, ସାଆନ୍ତାଣୀ କହୁଥିଲେ ଅବିକା ।"
"କ'ଣ ତମ ମତ ?"

“ମୋ, ମତ କଥା କ'ଣ ଚଗୃତ୍ରୁଚନ୍ଦ୍ର ଆଜ୍ଞା ? ସାଆନ୍ତାଣୀ ଜ୍ୱାଇଁ ସଆନ୍ତଙ୍କ ଫଟ ଦେଖେଇଲେ । ଆଃ ! ବଡ଼ ସାଇଟି ଚେହେରା ଖଣ୍ଡେ—ତା–ଉ······!!”

“ହଉ, ଗୁଡ଼ !” କଥାର ମୋଡ଼ ଫେରେଇ ବନୂବାବୁ କହିଲେ, “ମାହାନ୍ତିଏ ! କାଠ ଯାହା ଚିରା ହୋଇଚ, ଅଣ୍ଟିବ ନାଇଁ । ଦ'ଟା ଧୋବାଙ୍କୁ ଡ଼ାକ କାଲ ସେ ମହଗାଁଆ ଚୋଟାରୁ ଗୋଟାଏ ବଡ଼ ଡାଳ୍ନି ଖସେଇ ଦବଟି !”

“ହଉ ଆଜ୍ଞା !”

*       *       *       *

ନବଙ୍କ ସର ଯାଇଛି ।

ବନୂବାବୁଙ୍କୁ ଆଉ ନିଶ୍ୱାସ ମାରିବାକୁ ଫୁରୁସତ ନାଇଁ । ନବଙ୍କ ଦିନ ସେ ସମୁଧିଙ୍କୁ ଜବାବ ଦେଇ ଦେଲେ, ଝିଅକୁ ୪୦ ଭରି ସୁନାର ଗହଣା, ଜ୍ୱାଇଁ ନାଁରେ ଦଶ ଏକର ଜମି, ସାଇକେଲ, ଘଣ୍ଟା, ନଗଦ ଦ'ହଜାର ଟଙ୍କା ବାଟଖର୍ଚ୍ଚ, ଖଟ, ପଲଙ୍କ, ଟେବୁଲ୍, ଚଉକି, ଜାବତୀୟ ଆସବାବ ପତ୍ର ଦେବେ ।

ଆଜ ମଂଗଳ ······

କା'ଲି ବାହା ।

ହୁଳହୁଳି ଧ୍ୱନିରେ ଦୁଲୁକୁଚି ମୌଥିଳୀପୁର ଗାଁ । ବନ୍ଧୁ-ବାନ୍ଧବ, କୁଣିଆଁ-ମଇଜ ଆସି ଝୁନ୍ଧ ହେଇ ଗଲେଣି ବନୂବାବୁଙ୍କ ଘରେ ।

ଦ'ଦିନ ହେଲା ଚୂଲୁଛି ଭୂରି ଭୋଜନ ।

ସେଦିନ ସକାଳେ ଗୁମାସ୍ତା ଅଇଁଠ ମାହାନ୍ତିଙ୍କ ପାଖରେ ବସେଇ, ଝିଅ ପାଇଁ ତିଆର ହୋଇ ଆସିଥିବା ଗହଣା ସବୁ କାଢ଼ି ଦେଖଉଥିଲେ ବନ୍ଧୁବାବୁ । ସବୁ ଜିନିଷ ରେଡ଼ି ହୋଇ ଯାଇଛି— ଖାଲି ସାଇକଲ୍‌ଟା ଆସିନାହିଁ । ଲୋକ ଯାଇଛି କଟକ—ଫେରିବ ଉପର ଓଳି ସରିକି ।

"କ'ଣ ମାହାନ୍ତିଏ ?" ବନ୍ଧୁବାବୁ ପଚାରିଲେ , "ଆମେ ଯାହା ଜିନିଷ ଦେଉଚେ, କ'ଣ ମନ୍ଦ ଦେଉଚେ ??"

ମଠା ଚଦରକୁ ଚଉତେଇ କାନ୍ଧରେ ପକଉ ପକଉ ଅଇଁଠ ମାହାନ୍ତି କହିଲେ,—"ବନ୍ଧୁ ଘରଟାଏ ପାଇଗଲେ । ତାଙ୍କ ଭାଗ୍ୟ ତେଜ୍ ଆଜ୍ଞା ! ନଇଲେ········"

"ନହେଲେ କ'ଣ ହେଇଥାନ୍ତା ? " ବନ୍ଧୁବାବୁ ପଚାରିଲେ ।

ପ୍ରଭୁଭକ୍ତର ଅଭିନୟ କରି ମାହାନ୍ତିଏ ଜବାବ ଦେଲେ, "ଆପଣ ଯାହା ଜିନିଷ ଦେଉଚନ୍ତି, ସିଏ ତାଙ୍କ ଧିଆନ୍ତରେ ଦେଖିଥିବେ ନା ଆଗ !!"

"ମା-ହା-ନ୍ତି-ଏ !!" ଦାନ୍ତ କାମୁଡ଼ି ଖିଙ୍କାରି ହୋଇ ଉଠିଲେ ବନ୍ଧୁବାବୁ, "ଯେତେ ହେଲେ ସେମାନେ ମୋର ବନ୍ଧୁ । ତମେ ତାଙ୍କ ଧିଆନ୍ତ ନାଁ·········"

ଧାଏଁ କିନା ଚମକି ପଡ଼ିଲେ ମାହାନ୍ତିଏ । ଦି'ଥର ଖଣ୍ଟି ଢୋକ ଢୋକି, ଗଳାସ୍ୱର ନୂଆଇଁ କହିଲେ, "ବୁଢାହେଲେ ମଣିଷର କଥା ସଇଲା ଆଜ୍ଞା ! ମୋର କ'ଣ କିଛି ଖିଆଲ ପଡ଼ୁଚକି !! ହଁ ଠିକ୍ କଥା ! ଆପଣ ଯେମିତି ବଡ଼ ଲୋକକୁ କ୍ୱାଇଁ ସାଆନ୍ତ ଘର ସେମିତି ବଡ଼ ଲୋକ । ଠିକ୍ ତାଳ ପଡ଼ିଚି ।"

"ଆଉ ତାଙ୍କ ଧିଆନ୍ତ ନାଁ ଧରୁଥିଲ ଅବକା ?"

"ମୁଁ···ମୁଁ···ଭାବୁଥିଲି ······"

"କ'ଣ ଭାବୁଥିଲ ?"

"ଭାବୁଥିଲି···ସେମାନେ ଥିଲେବାଲା ନୁହଁନ୍ତି ।"

"ହେଁ···ହେଁ···ହେଁ···"ଖୁବ୍ ଜୋରରେ ହସି ଉଠିଲେ-ବନୁବାବୁ ।

*　　*　　*　　*

ବରଧରା ଗୁଳିଗଲାଣି ଅମର ପାଟଣା ।

ବାଦ୍ୟ, ହୁଳହୁଳି ଧ୍ୱନିରେ କମ୍ପି ଉଠୁଚି ନୈଥିଳପୁରର ଆକାଶ ।

କଚେରି ଘରର ଗୋଟିଏ ଆରାମ ଚଉକି ଉପରେ ବସିଚନ୍ତି ବନୁବାବୁ । ଗୁମାସ୍ତା ଅଇଁଠ ମାହାନ୍ତି ବେକଚପା ମଠାକୋଟ୍ ଉପରେ ମଠା ଚଦର ପକେଇ ଏ ପାଖ ସେ ପାଖ ହଉଚନ୍ତି !

ଯା ହଉ, ଭଲ ଜାଗାଟିଏ ଯୁଟିଚି ! ଅମରପାଟଣା ଦାସ ଘର ନାଁ ଡାକ । ଗୁଡ଼ାଏ ସମ୍ପତ୍ତି······ଗୋଟିଏ ବୋଲି ପୁଅ···ଭଲ ବନ୍ଧୁଟିଏ ଏକା !! ହଁ, ଆଉ ବର୍ଷ ପୂଝୁଁ ବଳି ଭଲ ଜାଗାଟିଏ ଯୁଟିଥିଲା, କଥାବର୍ତ୍ତା ବି ପକ୍କା ହୋଇ ଯାଇଥିଲା ! କିନ୍ତୁ ମଂଗନଦାନ ସମ୍ବନ୍ଧ ଚିଠି ଲେଖିଲେ ବନୁବାବୁଙ୍କ ପାଖକୁ । ଦାଣ୍ଡରୁ ଚିଠି ଖଣ୍ଡିକ ଆଣି ଗୁମାସ୍ତା ଅଇଁଠ ମାହାନ୍ତିଙ୍କ ହାତକୁ ବଢ଼େଇ ଦେଲା ଭକାରିଆ—ଠିଆହେଲା ଥୋଡ଼ାଏ ଦୂର ତଫାତରେ । ମାହାନ୍ତିଏ କୋଟ୍ ପାକେଟ୍‌ରୁ କୋଉ ମାନ୍ଧାତା ଅମଳର ସୂତାବନ୍ଧା ଚଷମା କାଢ଼ି, ନାକ ଅଗରେ ଠେପଦେଇ, ଅଣ୍ଟା ସିଧା କରି ବୁଦ୍ଧଦେବଙ୍କ ପରି ଧ୍ୟାନମଗ୍ନ ଭାବରେ ପଢ଼ିବାକୁ ଲାଗିଲେ ଚିଠି ।

ମଝିରେ ବନୁବାବୁ ପଚାରିଲେ, "କ'ଣ ସିଏ ?"

ଷଣ୍ଢ ଆଡ଼ ପଟେଇଲା ପରି ଆଡ଼ ପଟେଇ, ଚଷମା ଫାଙ୍କରେ ବନୁବାବୁଙ୍କ ମୁହଁକୁ ଚେଟେଇକରି ଅନେଇଁଲେ ମାହାନ୍ତିଏ । କହିଲେ, "ଆପଣଙ୍କ ସମ୍ବନ୍ଧ ଭାଷା ଲେଖିଛନ୍ତି ।"

ବନୁବାବୁ ସିଧା ହୋଇ ବସି କହିଲେ, "କ'ଣ ଲେଖିଛନ୍ତି ପଢ଼ ।"

ଆଉ ଥରେ ଚିଠି ଉପରେ ଆଖି ବୁଲେଇ ନେଇ ଚହିଁକି ଉଠିଲେ ମାହାନ୍ତିଏ,—"ଆଃ ! ଏଗୁରାକ କଣ କଥା ଅବସ୍ଥା ?"

"କଣ କ ?"

"ଆଜ୍ଞା ! ସିଏ ଲେଖିଛନ୍ତି, ଭାଗ୍ୟରେ ଥିଲେ ଆପଣଙ୍କ ପରି ବନ୍ଧୁ ମିଳେ । ଆପଣ ଯାହା ଦବାକୁ ଜବାବ କରିଛନ୍ତି, ସେଥିରେ ତାଙ୍କର କିଛି ଓଜର ଆପତ୍ତି ନାହିଁ । ହେଲେ, ପୁଅ ତାଙ୍କର... ମାନେ ...ମାନେ ...ଆପଣଙ୍କ ଜ୍ୱାଇଁ ସାଆନ୍ତ କୁଆଡେ଼ ଏକା ଜିଦ୍ ଧରି ବସିଛନ୍ତି, ରେଡ଼ିଓ ନ ଦେଲେ ବାହା ହେବେ ନାହିଁ !"

ବୁଲା କୁକୁରକୁ ଚେଲାଟାଏ ପକେଇଲେ ସିଏ ଯେମିତି ଦାନ୍ତ ଫୁଲାଏ ଦେଖେଇ ଖିଙ୍କାରି ହୋଇ ଉଠେ, ବନୁବାବୁ ସେମିତି ଖିଙ୍କାରି ହୋଇ ଉଠିଲେ । କଳକଳା ରଡ଼ିଦେଇ କହିଲେ, "ଏତେ ଧମାକ୍ ! ରେଡ଼ିଓ ନ ଦେଲେ ବାହା ହବ ନାହିଁ ? ନ ହଉ, ଯଥେଷ୍ଟ ବର ମିଳିବେ । ହ୍ୟାବ ଅର୍ଶିତ...... । ମୁଁ ମକଦ୍ଦମା-କରି ତାଙ୍କଠୁ ସବୁ ଖେତ-ଖେସରା ଆଦାୟ କରିବି । ମାହାନ୍ତିଏ ! -ଲେଖ ଚିଠି !!"

"ଆଜ୍ଞା ! ଧୈର୍ଯ୍ୟ ଧରନ୍ତୁ !! ଥିର ପାଣି ପଥର କାଟେ ।"

"ମୂର୍ଖ ! ତମେ ମତେ ବୁଦ୍ଧି ଶିଖେଇବ ? ମୁଁ କହୁଚ, ଲେଖିଦଅ, ଆମେ ଆମର ଠିକ୍ ଠାକ୍ ହେଇ ଅଛୁ । ତମ ଇଚ୍ଛା ହେଲେ ଆସି ବାହାଘର କର, ନଇଲେ ନାଇଁ । ମୁଁ ଯାହା ଜବାବ ଦେଇଛ ସେଯା ଦେବ । ମୋର ବାପ ଗୋଟାଏ, ମୋର କଥା ଗୋଟାଏ ।"

ଏଇମିତି ହେଇ ସେଠୁ ବାହାଘର ଭାଙ୍ଗିଥିଲା ।

ଅନଉଁ ଅନଉଁ ବର-ଶୋଭାଯାତ୍ରା ଆସି ପହଞ୍ଚିଗଲା ବନୁବାବୁଙ୍କ ଦାଣ୍ଡରେ । ଶଂଖ, ମହୁରୀ, ହୁଳହୁଳିରେ କମ୍ପି ଉଠିଲା ମୈଥିଳପୁର ଗାଁ । ମାଇପେମାନେ ବରକୁ ବନ୍ଦାପନା କରି ପାଲ୍ଙ୍କିଟି ନେଲେ ଭିତରକୁ ।

ବରଯାତ୍ରୀ ଆସିଚନ୍ତି ଖାଉଚନ୍ତି ।

ଅତ୍ୟାଧୁନିକ ଯୁଗର ଲୋକ—ସବୁତକ କଲେଜ ପଢୁଆ ଟୋକା ।

ସନ୍ଧ୍ୟା ।

ପୁରୋହିତେ ଶୁଦ୍ଧ-ପୂତ ସ୍ୱରରେ ଚକାମାଳି ପକେଇ, ବେଦୀ ପାଖରେ ବସି ମନ୍ତ୍ରୋଚ୍ଚାରଣ ଆରମ୍ଭ କରି ଦେଲେଣି । ଚାରିଆଡ଼େ ହୁଳହୁଳିର ଉଚ୍ଛୃଙ୍ଖଳ ଧ୍ୱନି ।

ବେଦୀ ଉପରେ ବର କନ୍ୟାଙ୍କର ହାତ ଗଣ୍ଠି ପଡ଼ି ସାରିଲାଣି । ହଠାତ୍ ଗୋଟାଏ ଘଟଣା ଘଟିଗଲା । ଉପସ୍ଥିତ ଲୋକଙ୍କ ଭିତରେ ଚଖେଳିଗଲା ଶୃଙ୍ଖଳା । ବେଦୀ ଉପରୁ ଉଠିଗଲା ବର । ଘଟଣା କ'ଣ କେହି କିଛି ବୁଝିପାରିଲେ ନାହିଁ । କିଏ କହିଲା, 'ମୁଣ୍ଡ ଖରାପ' 'ଆଉବାୟୁ' ଇତ୍ୟାଦି ।

ବନୁବାବୁ ରାଗରେ ରକ୍ତ ଗୋଲାପ ହେବାଉ ଥାନ୍ତି । ଘଟଣା ଅନୁସନ୍ଧାନ ଚାଲିଲା । ଦି' ଚାରି ଜଣ ଲୋକ ବରକୁ ପୁଣି ବେଦୀ-ଉପରେ ନେଇ ବସେଇ ଦେଲେ । ପାଞ୍ଚ ମିନିଟ୍ ଯାଇଚି କି ନାହିଁ ପୁଣି ସେଇ ଅବସ୍ଥା !

ଗୁମାସ୍ତା ଅଇଁଠ ମାହାନ୍ତି ବନୁବାବୁଙ୍କୁ ଆସି କହିଲେ, "ଆଜ୍ଞା ! ଘଟଣା ହଉଚି, ଏ ଶଳା ଟୋକାଏ (ଆସିଥିବା ବରର ସହପାଠୀ ବରଯାତ୍ରୀ) ଏତକ କାଣ୍ଡ କରିଚନ୍ତି । ବରକୁ ସେଇମାନେ ଶିଖେଇଲେ, 'ଆମେ ସବୁ କଲେଜରେ ପଢ଼ୁଚୁ···ଆମର ଏତେ ସମୟ ଧରି ଗୋଟାଏ ବେଦୀରେ ବସି ରହିବ କିଏ ?' ସେ ସେଇଥିପାଇଁ ଉଠିଗଲେ ।"

ବନୁବାବୁ କିଛି ନ କହି, ଭିତରକୁ ଯାଇ ବର ପକ୍ଷଙ୍କୁ ଡକେଇ ପଚାରିଲେ, "ଆପଣମାନେ କେତେ ସମୟ ଭିତରେ ବାହାଘର ଶେଷ ହେବା ଚାହାନ୍ତି ?"

ଉତ୍ତର ମିଳିଲା, " ଅଧଘଣ୍ଟାଏ ।"

ସେହି ଅନୁସାରେ ପୁଣି କାର୍ଯ୍ୟ ଆରମ୍ଭ ହେଲା ।

ବରଯାତ୍ରୀ କଲେଜ ଟୋକା-ଦଂଗଲ୍ ଘଉଡ଼ନେଇ ବସିଲେ ବେଦୀ ପାଖରେ ।

ଘଣ୍ଟା କଣ୍ଟା ଯିମିତ ଅଧ ଘଣ୍ଟାଏ ସମୟ ଅତିକ୍ରମ କରି ଅଧିକା ଗୋଟିଏ ମିନଟ୍ ଗାରକୁ ସ୍ପର୍ଶ କରିଚ, ବରଯାତ୍ରୀଙ୍କ ଆଖିର ଇଙ୍ଗିତରେ ପୁଣି ବର ଉଠିଗଲା ବେଦୀ ଉପରୁ ।

ଏଥର ବନୁବାବୁ ଆଉ ଘଡ଼ି ସମ୍ଭାଳି ପାରିଲେ ନାହିଁ । ସହଜେ ତ ରାଗୀ ଲୋକ ! ଯା ହୀବ, ଝିଅ ବାହାଘର ଯେତିକ ହେଲା, ସେତିକ ! ସେ ଦାନ୍ତ କାମୁଡ଼ି ପାଖରେ ଥିବା ଅଖାଡ଼ୁଆ ଭଡ଼ାରିଆକୁ ଇଂଗିତ ଦେଲେ, "ହୁଁଃ ।"

ଇସାରା ପାଇବା ମାତ୍ରେ ଅଗନା-ଅଗମ୍ଭୀ ବନସ୍ତ ଭିତରେ ବାଘଟୋଇ ଉପରେ ବାଘ ଝାମ୍ପ ଦେଲାପରି ଭଡ଼ାରିଆ ଝାମ୍ପ-ଦେଲା ବର ଉପରକୁ ।

ବନୁବାବୁ ନିଜ ନିଶରେ ହାତମାରି କହିଲେ, "ତାକୁ ନେଇ ବାନ୍ଧିପକା ଗୋଟାଏ ଘରେ ! ତାମସା ଲାଗିଚି ଏଠି !! ନା ?"

ନିର୍ଦ୍ଦେଶ ମୁତାବକ ବରକୁ ଗୋଟାଏ ଘରେ ପୂରେଇ ବାହାରୁ ତାଲା ଠୁକିଦେଲା ଭଡ଼ାରିଆ ।

ଠିକ୍ ତା'ପରେ ପରେ·····

କଲେଜ ପଢ଼ୁଆ ବରଯାତ୍ରୀଙ୍କ ଉପରେ ଆରମ୍ଭ ହେଲା ନମ୍ବର ମାଡ଼ । ବନୁବାବୁଙ୍କର ରୁଦ୍ରମୂର୍ତ୍ତି ଆଉ ଗର୍ଜନ, ଭକାରଆର ଠେଙ୍ଗା ପାହାରରେ କିଏ କୁଆଡ଼େ ଛନ୍‌ଛତ୍ର ହୋଇ ଦେ ମାର୍ ଛୁ ! ଅଣ୍ଟାରେ ହାତ ଦେଇ, ବେଦୀ ପାଖରେ ଠିଆ ହୋଇ କହୁଥାନ୍ତି ବନୁବାବୁ, "ହ୍ୟାବ ଅର୍ଷିତ······ । ପାଠ ପଢ଼ୁଚ ? ଶଳାଙ୍କୁ ହେଇଚ ପାନେ !! "

ଟିକେ ପରେ ।

ବନୁବାବୁ ନିର୍ଦ୍ଦେଶ ଦେଲେ, ବରକୁ ମୁକ୍ତ ଦେବା ପାଇଁ । ବରର ବାପ ଆସି ବନୁବାବୁଙ୍କ ହାତ-ଗୋଡ଼ ଧରି ଅନୁରୋଧ କଲା, "ଯାହାତ ହେବାର ହେଲାଣି, ପଛ କଥା ଗୁଡ଼ାକୁ···କାମଟା ଉଠିଯାଉ !"

"ନା, ଯେତିକି ହେଲା ସେତିକି । ତମ ଘରକୁ ମୁଁ ଝିଅ ଦେବି ନାହିଁ । କାରଣ ତମେ, ତୁମ ଗୁଣବନ୍ତ ପୁଅ, ବରଯାତ୍ରୀମାନେ ଯୋଉ କାର୍ଯ୍ୟ କଲେ ଆଉ ତାଙ୍କୁ ଯୋଉ ପୁରସ୍କାର ଦିଆହେଲା, ଭବିଷ୍ୟତରେ ତା'ର ପ୍ରତିଶୋଧ ନିଆ ହେବ ମୋ' ଝିଅ ଉପରେ ।" ସଫା ସଫା କହି ଦେଲେ ବନୁବାବୁ ।

ଶତ ଅନୁରୋଧ ବିଫଳ ହେଲା······

ବିଷଣ୍ଣ ବଦନରେ ବରପକ୍ଷ ବରକୁ ନେଇ ଫେରିଗଲେ ।

ଗୁମାସ୍ତା ଅଇଁଠ ମହାନ୍ତିଙ୍କି ଡାକି ବନୁବାବୁ କହିଲେ, "ମହାନ୍ତିଏ ! ଆଜି ରାତିରେ ଯେମିତି ହେଲେ ବାହାଘର ହବ··· ହବ···ହବ । ଯାଅ ! ଲୋକ ପଠାଅ !! ଖୋଜ କର !!!"

*   *   *   *

ରାତ୍ତ ଭିନଟା ।

ପୁଣି ପୂର୍ବବତ୍ ଶଙ୍ଖ, ମହୁରୀ, ହୁଳହୁଳିରେ କମ୍ପି ଉଠିଲା—ମୈଥିଳୀପୁର ଗାଁ ।

ଅଇଁଠ ମାହାନ୍ତ ଭାରି ଯୋଗାଡ଼ିଆ ଲୋକ । ସେ ସେଇ ରାତିଏ ରାତିଏ ୧୦ । ୧୨ ଜଣ ଲୋକଙ୍କୁ ସାଙ୍ଗରେ ନେଇ ସାଇକେଲରେ ଛୁଟିଲେ ।

ମୈଥିଳୀପୁର ପାଖକୁ ସଦାନନ୍ଦପୁର ବାଟ ଦ'କୋଶ । ପୂର୍ଣ୍ଣ ମାହାନ୍ତ ସେ ଗାଁର ନିମ୍ନ-ମଧ୍ୟବିତ୍ତ ଲୋକ । ପୁଅଟି ତାଙ୍କର ଆଇ· ଏ· ପାସ୍ କରି ଘରେ ବସିଥିଲା । ମାହାନ୍ତଏ ଯାଇ ହାଜର ହୋଇଗଲେ ସେଇଠି । ଦ' ଘଣ୍ଟା ଭିତରେ କଥା ପକ୍କା କଲେ । ପୂର୍ଣ୍ଣ ମହାନ୍ତଙ୍କ ସ୍ତ୍ରୀ କହିଲେ, "ଯଦି ପୁଅକୁ ମୋର ଭଗବାନ୍ ବଳେ ବଳେ ଆଣି ଦଉଚନ୍ତି ତା ହେଲେ ମୋର କିଛି କହିବାର ନାହିଁ ।"

ସତ ଗୋଟାକ ବେଳେ ବର ଓ ତା'ର ବାପକୁ ସାଇକେଲରେ ବସେଇ ଅଇଁଠ ମାହାନ୍ତ ଓ ତାଙ୍କର ଅନୁଚରମାନେ ଆସି ପହଞ୍ଚିଲେ ମୈଥିଳୀପୁରରେ । ପ୍ରଥମେ ବରକୁ ଦେଖି ସମସ୍ତେ ଖୁସି ହୋଇ ଗଲେ । ଅଇଁଠ ମହାନ୍ତ ଠସିକି କରି କହିଲେ, "ଏକ ନମ୍ବରକୁଡ଼ ଇଏ ଶତାକାଟି ଦେଲରେ !!"

ବାହାଘର ସବୁ ବେଦୀ ଉପରୁ ବର-କନ୍ୟା ବିଦାୟ ନେଲା ବେଳକୁ ପାଖ ବାଉଁଶ ଖାଇରୁ ଗଞ୍ଜା ଚୂଳଝାଡ଼ି ଡାକ ଦେଲା,
"କକଡ଼୍...କ...ଅ...ଅ..."

ରାତି ପାହି ଆସୁଥିଲା.....



କଟକ
ତା ୭ । ୯ । ୫୮
( ଜନ୍ମାଷ୍ଟମୀ )

# ମରୀଚିକା

ଅଫିସରୁ ଫେରି ଘର ଭିତରକୁ ପଶିଯାଇ ବଡ଼ ପାଟିରେ ନିମାଇଁ ବାବୁ ଡାକିଲେ—"ଚନ୍ଦରା ! ହେ ଚନ୍ଦରା !!" କିଛି ଉତ୍ତର ନ ପାଇ ମନକୁ ମନ କହିଉଠିଲେ ନିମାଇଁ ବାବୁ—"କୁଆଡ଼େ ସବୁ ଯାଉଚନ୍ତି ଏଗୁଡ଼ାକ ? ମଣିଷ ନାଇଁତ ଆସି ଏଗୁଡ଼ାଙ୍କୁ ଆଗ ଭେରିଏ ନ ଡାକିଲେ ହବନାଇଁ !"

ଦେହରୁ ପୋଷାକପତ୍ର କାଢ଼ୁ କାଢ଼ୁ ପଛଆଡ଼େ କାହାର ପଦ ଶବ୍ଦ ଶୁଣି ମୁହଁ ବୁଲେଇ ଅନେଇଁଲେ ନିମାଇଁ ବାବୁ । ଚନ୍ଦରା ଉପରେ ଯେମିତି ତାଙ୍କ ଦୃଷ୍ଟି ପଡ଼ିଯାଇଚି, ସେ ରାଗରେ ଦାନ୍ତ କାମୁଡ଼ି ପଚାରିଲେ, "ହଇରେ ! କୁଆଡ଼େ ଯାଇଥିଲୁ ?"

କିଛି କଥା ନ କହି, ଅପରାଧୀଙ୍କ ପରି କାନ୍ଥକୁ ଆଉଜି ଦାନ୍ତରେ ଆଙ୍ଗୁଠିରୁ ନଖ ଛିଣ୍ଡେଇବାରେ ଲାଗିଲା ଚନ୍ଦରା ।

"ସବୁରାଜ କୁଆଡ଼େ ଗଲେ ?" ପଚାରିଲେ ନିମାଇଁ ବାବୁ ।

ଚନ୍ଦରା ଉତ୍ତର ଦେଲା—"ସିଏତ ସକାଳ ପହରୁ ଯାଇଚନ୍ତି କୁଆଡ଼େ !"

"ତୁ ଜାଣିନୁ କୁଆଡ଼େ ଯାଇଚନ୍ତି ?"

"ନାଇଁ ଆଜ୍ଞା !"

"ସିଏ ଗଲାବେଳେ ତୁ ଥେଲୁଟି ?"

"ହଁ ।"

"ପଚାରିଲୁ ନାଇଁ, ବାବୁ, କୁଆଡ଼େ ଯାଉଚ କହିଯାଅ । ବାପା ଆସିଲେ ପଚାରିବେ ।"

"ମୁଁ'ତ ଥରେ ପଚାରିଥେଲି ଯେ·········ମତେ ମାରେ କି ନ ମାରେ !"

"ମା' ଥେଲେ ନା ସିଏ ଗଲାବେଳେ ?"

"ହଁ ।"

"ସିଏ କିଛି କହିଲେ ନାଇଁ ?"

"ନାଇଁ ।"

ନମାଇଁ ବାବୁ କିଛି ସମୟ ନୀରବ ରହି ନିଜ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ଡାକିଲେ—"ଟୁସୀ ! ଟୁସୀ !!"

"ଯାଉଚି ।" ରୋଷେଇଘରୁ ଟୁସୀ ଦେବୀ ଜବାବ ଦେଲେ—"ଟିକେ ସବୁର କର ! ଚା' ହେଇ ସରିଲାଣି ।"

ନମାଇଁ ବାବୁ ଏକଦମ୍ ବିଗିଡ଼ିଯାଇ କହିଲେ—"ତମର ସବୁବେଳେ ସେଇ ଗୋଟାଏ କଥା ! ସତେ ଯେମିତି ଚା' ପାଇଁ ମୁଁ ମରିଯାଉଚି !! ଟିକେ ଆସିଲ ଆଗ ଏଆଡ଼େ !"

ଓଦା ହାତକୁ ପଣତ କାନିରେ ପୋଛି ପୋଛି ଟୁସୀ ଦେବୀ ଆସି ବସି ବସିପଡ଼ିଲେ ସ୍ୱାମୀ ନମାଇଁବାବୁଙ୍କ ପାଖକୁ ଲଗି ପଡ଼ିଥିବା ଚଉକି ଉପରେ । ବସି କହିଲେ—"କାଠଗୁଡ଼ାକ ଓଦା । ମୋଟେ ଲାଗୁନାଇଁ । ଖାଲି ଧୂଆଁ ହଉଚି । ସେଥିପାଇଁ ଆଜି ଚା' କରିବାକୁ ଡେରି ହେଲା ।"

ନମାଇଁବାବୁ ବିବ୍ରତ-କଣ୍ଠରେ କହିଲେ—"ଓଃ ! ପୁଣି ସେଇ କଥା !! ହାୟରେ କପାଳ ! ଘରବୁଡ଼ ପାଣି ଆଣୁ ଏ ହେଲାଣି···ତମର ସବୁଦିନେ ସେଇ ଓଦା କାଠ, ଚୂଲି ଜଳଲା ନାଇଁ, ଧୂଆଁ ହେଲା !!"

ଆଶଂକିତ ସ୍ୱରରେ ଝୁସୀ ଦେଈ ପଚାରିଲେ, "କଅଣ ଘରବୁଡ଼ ପାଣି ଆଣୁ ଏ ହେଲା ?"

"ତମ ଗୁଣବନ୍ତ ପୁଅର ଗତି କୁଆଡ଼େ ଜାଣିଲଣି ??"

"ନାଇଁ, ମୁଁ ତ କିଛି ଜାଣିନି !"

"ପଢ଼ା ନାଇଁ, ପଢ଼ି ନାଇଁ···ଯାଇଚି ସଭାକୁ ।"

"ଏ ଏ-ଇ କଥା ? ଯାଉ, ମର୍ଦ୍ଦପୁଅ, କ'ଣ ମାଇକିନିଆ ଝିଅ ହେଇଚି କି ?"

"ବାଃ" ସିଧା ହୋଇ ବସି ନମାଇଁ ବାବୁ କହିଲେ—"ଆଜି ସଭାକୁ ଯିବ, କାଲି ଜେଲଖାନା ଯିବ, ପଅରଦିନ ଗୁଳିଖାଇ ମରିବ···ଏଇ ପାଲା ଲାଗିଥିବ ଏଠି ?"

"ଆଁୟଁ ! କ'ଣ ଗୁଳି ?" ଚମକି ପଡ଼ି ଝୁସୀ ଦେଈ ପଚାରିଲେ ।

ସ୍ୱାଭାବିକ ଭାବରେ ନମାଇଁ ବାବୁ ଆରମ୍ଭ କଲେ, "ସିଏ ଆଉ କେହି ନୁହେଁ । ବ୍ରିଟିଶ୍ ସର୍କାର ! ବୁଝିଲ !"

"ଝୁସୀ ଦେଈ ପୁଣି କ'ଣ କହି ଆସୁଥିଲେ, ଏତିକିବେଳେ ଚନ୍ଦରା ଚା' କେଟିଲି ଓ ଦୁଇଟା କପ୍-ପ୍ଲେଟ୍ ଆଣି ନମାଇଁଙ୍କ ବାବୁଙ୍କ ସାମ୍ନା ଟେବୁଲ ଉପରେ ରଖିଦେଇଗଲା । ଝୁସୀ ଦେଈ କେଟଲିରୁ କପେ ଚା' ଢାଳି ବଢ଼େଇଦେଲେ ନମାଇଁ ବାବୁଙ୍କ ହାତକୁ । ନମାଇଁ ବାବୁ ଚା'ରୁ ସୋଉଁକାଏ ପିଇ ଆରମ୍ଭ କଲେ—"ବାସ୍ତବିକ କ'ଣ ତାଙ୍କୁ ମିଳୁଚି ସେ ସଭାରୁ ମୁଁ ବୁଝିପାରୁନି । ଟୋକା ଲୋକ, ଅବିକା

ରକ୍ତ ତେଜ ଅଛି, ଉଆଁ ମାରୁଚ ' କିନ୍ତୁ ଦିନେ ବେଳ ଆସିବ ଯାହାଙ୍କ ପାଇଁ, ଯେଉଁ ଦେଶ ପାଇଁ ସିଏ ଏତେ ନାଚୁଚ, ସେ ଦେଶ, ସେ ନେତା କେହି ତାକୁ ପଚାରିବେ ନାହିଁ । କେତେ ଯୁବକଙ୍କ ଜୀବନ ଆଜି ବାସ୍ତବିକ ନଷ୍ଟ କରିଦିଆ ହେଉଚ ସତେ ! ତମେ ଜାଣିଥିବ, ଏଇ ନେତାମାନଙ୍କ ପ୍ରବଞ୍ଚନାରେ ଗିରିଧାରୀ ମାଷ୍ଟ୍ରଙ୍କ ପୁଅ ଛାତ୍ର ଆନ୍ଦୋଳନରେ ମାତି ତା'ର ଅବସ୍ଥା ଯାହା ହେଲା । ଅବିକା ବିଚରା ଖାଇବାକୁ ପାଉନାହିଁ । ଏଇତ ଆଖି ଆଗରେ ଗୋଟାଏ ଘଟଣା, ଯୋଉ ନେତାମାନେ ଦେଶପାଇଁ ଆଜି ଭାରି ପାଟି କରୁଛନ୍ତି, ତାଙ୍କର ଭିତରୁ ଜଣେ ନେତା ନେତାଗିରି ସାଙ୍ଗରେ ଓକିଲାତି ବି କରନ୍ତି । ସେଇ ଓକିଲ ନେତା ଆଇ. ଏ. ପଢୁଥିବା ଜଣେ ଯୁବକଙ୍କୁ କଲେଜ ଛାତ୍ର ଆନ୍ଦୋଳନରେ ମତେଇଲେ । ବର୍ତ୍ତମାନ ବିଚରା ସେ ଯୁବକଟି ଜେଲଖାନାରେ । କିନ୍ତୁ ଅନ୍ୟ ଆଡ଼େ ସେଇ ଓକିଲ ନେତାଙ୍କ ପୁଅ ବର୍ତ୍ତମାନ ବିଲାତରେ ପଢୁଛି ବାରିଷ୍ଟରୀ ।"

ଝୁସୀ ଦେବୀ କିଛି ପ୍ରତ୍ୟୁତ୍ତର ଦେଲେ ନାହିଁ, କେବଳ ବସି ରହିଲେ ଗୁମ୍ ହୋଇ ।

## (ଦୁଇ)

ରାତି ନ'ଅଟା ! ଝୁସୀ ଦେବୀ ଓ ନିମାଇବାବୁ ବସିଛନ୍ତି— ଚିନ୍ତିତ ହୋଇ । ଘର ଗୋଟାକରେ ନୀରବତାର ନିରଂକୁଶ ଶାସନ । ହଠାତ୍ ବାହାରୁ କେଉଁ ଆଗନ୍ତୁକର ପଦଧ୍ୱନି ଶୁଣାଗଲା ! ନିମାଇଁ ବାବୁ ଆଗକୁ ଝୁଙ୍କି ପଡ଼ି ଅନେଇଁଲେ । ପୁଅ ସରୋଜ ଆସୁଥିବା ଦେଖିପାରି ସେ ଉଠିଗଲେ ନିଜ ଶୋଇବା ଘରକୁ । ଝୁସୀ ଦେବୀ ନିଜର ମୁଖାକୃତିକୁ ଆହୁରି ଗମ୍ଭୀର କରିନେଇ ପୂର୍ବପରି

ବସି ରହିଲେ ସେଇଠି । କିନ୍ତୁ ପୁଅର ଶୁଖିଲା ମୁହଁ, ବପର୍ଯ୍ୟସ୍ତ କେଶରାଶିକୁ ଦେଖି ତାଙ୍କର ଗମ୍ଭୀରତା କୁଆଡ଼େ ମିଳେଇଗଲା ଆପେ ଆପେ ! ସେ ପଚାରିଲେ, "କୁଆଡ଼େ ଯାଇଥିଲୁ ଏତେବେଳ ଯାଏ ?"

ଦେହରୁ କାମିଜ ଖୋଲୁ ଖୋଲୁ ସରୋଜ ଉତ୍ତର ଦେଲା, "ସଭାକୁ । କାଲି ଜଣେ ନେତା ଆସିବେ.....ଲୁଣ ମରାହେବ ।"

ହୈମୀ ଦେବୀ ଆଉ କିଛି ନ କହି ଉଠିଗଲେ ରୋଷେଇ ଘରଆଡ଼େ ।

କିଛି ସମୟ ପରେ....

ଚାକର ଚନ୍ଦରା ଆଣି ଖାଇବାକୁ ବାଢ଼ି ଦେଲା । ହୈମୀ ଦେବୀ ପୁଅର ଖାଇବା ପାଖରେ ବସି ପଙ୍ଖା କରୁ କରୁ ପଚାରିଲେ, "ହଇରେ ! କ'ଣ ମିଳୁଛି ତତେ ସେ ସଭାରୁ ? ଗିରଧାରୀ ମାଷ୍ଟରର ଅବସ୍ଥା ଯାହା ହେଲା ଜାଣିଚୁଟି ?"

ଭାତ ଗୁଣ୍ଡାଏ ଗଳାଧଃକରଣ କରି ସରୋଜ ଉତ୍ତର ଦେଲା— "କି ଆଶ୍ଚର୍ଯ୍ୟ କଥା ତୁ କହୁଚୁ ବୋଉ !! କୌଣସି ଜାତିର ଇତିହାସ କେବେ ନୀରବ-ତ୍ୟାଗରେ ଗଢ଼ା ହେଲାଣି ? ଗିରଧାରୀ ମାଷ୍ଟର ଯୋଉ ତ୍ୟାଗ କଲେ, ତୁ କ'ଣ ଭାବୁଚୁ ସେଥିରେ ଦେଶର ସ୍ୱାଧୀନତା ସଂଗ୍ରାମ କିଛି ଲାଭବାନ୍ ହୋଇନ ?"

—"ଛେନାଠା ହୋଇଛି ।"

—"କୌଣସି ଜାତି, କୌଣସି ଦେଶ ଏକାଦିନକେ ସ୍ୱାଧୀନତା ହାସଲ କରେ ନାହିଁ ବୋଉ ! ସେଥିପାଇଁ ଦୀର୍ଘ ସଂଗ୍ରାମ ଲୋଡ଼ା ।"

"—କ'ଣ ତୋର ମତଲବ ମୁଁ କିଛି ବୁଝି ପାରୁ ନାହିଁ !" ଟିକେ ରୁକ୍ଷ ସ୍ୱରରେ କହିଲେ ଝୁସୀ ଦେବୀ, "ଆରେ ! ପାଠ-ଶାଠ ପଢ଼ି ମଣିଷ ହ, ବାହା-ଶାହା ହୋଇ ଘର-ସଂସାର କର୍‌, ତା' ପରେ ଯାଇ ଦେଶକାମ କଲେ ସିନା ମାନିବ !"

—"ବୋଉ ତୋ'ର ପରି ଯଦି ସବୁ ମା' ତାଙ୍କ ପୁଅମାନଙ୍କୁ ଏଇମିତି ଉପଦେଶ ଦିଅନ୍ତି, ତା' ହେଲେ ଏ ଜାତିର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ । ତୁ ଡରୁଛୁ କାହିଁକି ? ମୁଁ ତ ଫାଶୀଖୁଣ୍ଟରେ ଝୁଲିବାକୁ ଯାଉନି···କାଲିଠୁଁ ଲୁଣମରା ଆରମ୍ଭ ହେବ, ମୁଁ ସେଇ-ଥିରେ ଯୋଗ ଦେବାକୁ ଯାଉଛି ।"

ଝୁସୀ ଦେବୀ ପ୍ରଶ୍ନ କଲେ, ତମେ ସବୁ ଲୁଣ ମାରିଲେ ସରକାରର କ'ଣ କ୍ଷତି ହବ ଯେ······"

ସରୋଜ କହିଲା, "ଆଃ ! ତା'ର ଲୁଣ ଆଇନ ଭାଙ୍ଗି-ଯିବ ।"

—"ଆଚ୍ଛା, ତମେ ସବୁ କେମିତି ଲୁଣ ମାରିବ ?"

—"ଗୋଟାଏ ବଡ଼ ଜାଗାରେ ସମୁଦ୍ର ପାଣିକୁ ଆଣି ସିଝାଇଲେ ପାଣି ମରିଗଲା ପରେ ଲୁଣ ଆପେ ଆପେ······" ସରୋଜ ପାଟିରୁ କଥା ସରିଲା ନାହିଁ । ନଜର ଶୋଇବା ଘରୁ ବାହାରି ଆସି ନମାଇଁ ବାବୁ କହିଲେ, "ବାଃ ! ଚମତ୍କାର ଆଇଡ଼ିଆ ! ଦି' ଟଙ୍କାର କାଠ ଜାଳି ଦିଅଣାର ଲୁଣ ମାରିବ । ନୁହେଁ ? ହ୍ୟାପ ମୂର୍ଖଙ୍କର ଆଉ କାମ କ'ଣ ?"

ହାତ ଧୋଇବାକୁ ଉଠିବାର ଉପକ୍ରମ କରୁ କରୁ ସରୋଜ କହିଲା "ଏଠି ପଇସାର ପ୍ରଶ୍ନ ଉଠୁନି ବପା—ପ୍ରଶ୍ନ ଉଠୁଛି ସ୍ୱାଧୀନତାର ! ସମୁଦ୍ର ଆମକୁ ଭଗବାନ ଦେଇଛନ୍ତି—ସମସ୍ତଙ୍କର ସେଥିରେ ଅଧିକାର ଅଛି । ଲୁଣ ଦ'ଟା ପାଇଁ ଆମେ କାହିଁକି ସରକାରକୁ ଟିକସ ଗଣିବୁ ? ଆମେ ଲୁଣ ଆଇନ ଭାଙ୍ଗିବୁ—ଟିକସ ଦବୁ ନାହିଁ—ମହାତ୍ମା ଗାନ୍ଧୀ ଡାକରା ଦେଇଚନ୍ତି ।"

"ହଃ ! ଶେଷରେ ଏଯ୍ୟା ହବ, ଗୁଡ଼ାଏ ଲୋକ ମରିବେ—ଗୁଡ଼ାଏ ବାରଦୁଆର ହେବେ—ଫାଇଦା ଉଠାଇବେ ଆଉ ଦଳେ ।" କହି କହି ପୁଣି ଶୋଇବା ଘରକୁ ଗଲେ ନମାଇଁ ବାବୁ ।

ତହିଁ ଆରଦିନ ଦିନ ବାରଟା—

ରୋଷେଇ ଘରେ କାର୍ଯ୍ୟବ୍ୟସ୍ତ ଥିଲେ ଟୁସୀ ଦେବୀ । ତାଙ୍କର ଦୃଷ୍ଟି ଘନ ଘନ ପଡ଼ୁଥିଲା କାନ୍ଥ ଠଣାରେ ଥୁଆ ହୋଇଥିବା ଗ୍ଲୋବ ଘଣ୍ଟାଟି ଉପରେ । ଦୁଆର ଅଗଣାରେ ବାସନ ମାଜୁଥିଲା ଗୃହର ଚନ୍ଦରା ।

"ମାଉସୀ ! ମାଉସୀ !!" ଡାକ ଡାକ ଭିତରକୁ ପଶି ଆସିଲା ନୟନା । ନୟନା ଜଣେ ନାମଜାଦା ଓକିଲ ଦାମବାବୁଙ୍କ ଝିଅ । ନୟନାକୁ ଅନ୍ତରତର ସରୋଜ ଭଲ ପାଏ । ଏକଥା ଟୁସୀ ଦେବୀ ଓ ନମାଇଁବାବୁ ଉଭୟେ ଯଦିଓ ଜାଣନ୍ତି, ସେମାନେ କେବେହେଲେ ଦୁହିଁଙ୍କର ସ୍ୱଚ୍ଛନ୍ଦ ମିଳନରେ ବାଧା ଦିଅନ୍ତି ନାହିଁ ।

ମନେ ମନେ ଟୁସୀ ଦେବୀ ନୟନାକୁ ନିଜର ପୁତ୍ର-ବଧୂ ରୂପରେ କଳ୍ପନା କରି ସାରେଚନ୍ତି କୋଉଦିନୁ !

"କ'ଣ କଲୁ ମା' ?" ପଚାରିଲେ ଟୁସୀ ଦେବୀ ।

ଅତି ଉଦ୍‌ବେଗଭରା ସ୍ୱରରେ ନସୂନା କହିଲା "ମାଉସୀ ! ସରୋଜ ଝାଇ ଲୁଣମାରିବାକୁ ଯିବାରୁ ମଉସା ତାଙ୍କ ପଛେ ପଛେ ଗୋଟାଏ ବାଡ଼ି ନେଇ ଗଲେଣି ।"

ଥକ୍‌କା ମାରି ବସି ପଡ଼ିଲେ ଝୁସୀ ଦେବୀ । କହିଲେ, "କେମିତିଆ ଲୋକ ଇଏମ ? ପୁଅ କ'ଣ ପିଲା ହୋଇଛି ? ବାଡ଼ିଟାଏ ଧରି ଯିବା···ଛ୍ୟା !!"

ଗୋଟାଏ ଦୀର୍ଘନିଶ୍ୱାସ ପକେଇଲା ନସୂନା ।

ଝୁସୀ ଦେବୀ କହିଲେ, "ଘରେ ଘରେ ଆଜି ଏଇ ପାଲି !"

× × × ×

ସରୋଜକୁ ସଙ୍ଗରେ ଧରି ଆସି ଘରେ ପହଞ୍ଚିଲେ ନିମାଇଁ ବାବୁ । ରେଷେଇ ସରିବା ମାତ୍ରେ ଝୁସୀ ଦେବୀ କହିଲେ, "ଯାଅ ! ହ' ଜଣଯାକ ମୁହଁ ହାତ ଧୋଇ ଆସ ! ଖାଇବାକୁ ବଢ଼ା ହେଲାଣି ।"

ସରୋଜ କହିଲା, "ବୋଉ ମୁଁ ଖାଇବାକୁ ଆସିନାହିଁ— ଆସିଛି ତୋ ପାଖରୁ ବିଦାୟ ନେବା ପାଇଁ ।"

"କଣରେ ?" ସଙ୍ଗେ ସଙ୍ଗେ ଗର୍ଜି ଉଠିଲେ ନିମାଇଁ ବାବୁ, "ତୋ' ଦିମାକ୍ କ'ଣ ଖୁ'ବ ବଢ଼ି ଗଲାଣି ! କ'ଣ ପୁଉଣୀ ଯିବୁ ?"

"ହଁ ବାପା ! ନିଶ୍ଚୟ ମତେ ଯିବାକୁ ପଡ଼ିବ ।"

"ନା" ଚିତ୍କାର କରି ଉଠିଲେ ନିମାଇଁ ବାବୁ, "ତୁ ଯାଇ ପାରିବୁ ନାହିଁ ସରୋଜ ! ମୁଁ ଥିବାଯାକେ ତୋ' ଜୀବନ ନଷ୍ଟ ହେବା ଦେଖି ପାରିବନି ।"

"ହଉ, ଥୟ ଧର !" ମଝିରେ କହି ଉଠିଲେ ଝୁସୀ ଦେବୀ, "ପୁଅ କଣ୍ଟ ପିଲା ପୁଅ ନୁହଁ···ହେଲୁ ପାଇବା ପୁଅ ! ତା' ଉପରେ କ'ଣ ଏଣିକି ଜବରଦସ୍ତି ଚଳିବ ?"

ଅତି ଆବେଗଭରା ସ୍ୱରରେ ନିମାଇଁ ବାବୁ କହିଲେ, "ସେ଼ ଜବରଦସ୍ତି ନୁହେଁ ଝୁସୀ ! ମୁଁ ତା'ର ମଙ୍ଗଳ ପାଇଁ ଏକଥା କହୁଚି ।"

ଦୀର୍ଘ ସମୟ କଟିଗଲା ନୀରବରେ । କାହାର ମୁହଁରେ ଭାଷା ନାହିଁ ।

ନୀରବତା ଭଙ୍ଗି ଝୁସୀ ଦେବୀ ବଡ଼ ପାଟିରେ କହିଲେ, "ଚନ୍ଦର ! ଯା, ଖାଇବାକୁ ବାଢ଼୍ !!" ତା' ପରେ ପୁଅ ଉଦ୍ଦେଶ୍ୟରେ କହିଲେ, "ହଉ, ପୁଅରେ ! ଯିବା ପୂର୍ବରୁ ଗଣ୍ଡେ ଖାଇଦେଇ ଯା ! ତୁ କ'ଣ କୋଳର କାଖର ହୋଇଚୁ, ତତେ ମୁଁ ଅଟକେଇ ରଖିବି ? କିନ୍ତୁ ··· ··· ଯିବା ଆଗରୁ ଏତକ ମନେରଖ୍, ବାପା ଯାହା କହୁଚନ୍ତି, ଦିନେ ଭାବିବୁ । ତୋ'ର ପରି କେତେ ଲୋକ ଜୀବନକୁ ନଷ୍ଟ କରିବେ······" । ବାଷ୍ପରୁଦ୍ଧ ହୋଇ ଆସିଲା ଝୁସୀ ଦେବୀଙ୍କ କଣ୍ଠସ୍ୱର, "ଯୋଉଁମାନେ ଅନ୍ୟର ପିଲାକୁ ଶିଖେଇ, ତାର ଜୀବନ ନଷ୍ଟ କରି, ତାକୁ ଜେଲଖାନାକୁ ପଠାଉଚନ୍ତି, ତାଙ୍କ ପିଲା କେବେ ହେଲେ ସୁଖରେ ରହି ପାରିବେ ନାହିଁ— ସେମାନଙ୍କ ଜୀବନ ନଷ୍ଟପୁ ନଷ୍ଟ ହେବ । ସେ଼ ମୋର ଆଶଙ୍କା ନୁହେଁ—ଅଭିଶାପ ।" ଆଉ କହି ପାରିଲେ ନାହିଁ ଝୁସୀ ଦେବୀ । ନିମାଇଁ ବାବୁ, ସରୋଜ, ଗୃହର ଚନ୍ଦର ସମସ୍ତେ ମୂକ—କାହାର ମୁହଁରେ ଭାଷା ନାହିଁ । ସମସ୍ତେ ସ୍ଥାଣୁ—ଅଥର୍ବ ।

## (ତିନି)

ପନ୍ଦର ଦିନ ପରେ—

ସମୟ, ଅପରାହ୍ଣ ଗୃହଟି । ନିମାଇଁ ବାବୁ ବସି ଗୋଟାଏ କ'ଣ ବହି ପଢ଼ିବାରେ ବ୍ୟସ୍ତ ଥିଲେ । ପାଖରେ ବସିଥିଲେ ଝୁସୀ

ଦେଖୀ । କିଛି ସମୟ ପରେ ବନ୍ଧୁଟିକୁ ଯଥା ସ୍ଥାନରେ ରଖି ଦେଇ, ଗୋଟାଏ ସିଗାରେଟରେ ନିଆଁ ଧରେଇ ଦ୍ରୁତ ଗତିରେ ଘରୁ ବାହାରି ଗଲେ ନିମାଇଁ ବାବୁ । ଝୁସୀ ଦେଖୀ ସେଇଠି ବସିରହି କେବଳ ଚାହିଁ ରହିଲେ ନିମାଇଁ ବାବୁଙ୍କ ଯିବା ପଥକୁ ।

"ମାଉସୀ !" ପଛପଟୁ ନୟନାର ଡାକ ଶୁଣି ଝୁସୀ ଦେଖୀ ଫେରି ଆସିଲେ ବାସ୍ତବତା ଭିତରକୁ । ପାଖରେ ବସିପଡ଼ି ନୟନା ପ୍ରଶ୍ନକଲା – "ସରୋଜ ଭାଇଙ୍କୁ କୁଆଡ଼େ ବର୍ଷେ ଜେଲ୍ ହୋଇଗଲା ?"

ଝୁସୀ ଦେଖୀ କିଛି କହିଲେ ନାହିଁ—କହି ପାରିଲେ ନାହିଁ—କେବଳ ବକବକ କରି ଅନେଇଲେ ନୟନାର ସେହି କମନୀୟ, ସୁଗଠିତ ମୁଖାକୃତିକୁ ।

ପୁଣି ନୟନା ପ୍ରଶ୍ନକଲା, "ମଉସାଙ୍କ ମନ ଭାରି ଖରାପ । ନୁହେଁ ?"

ଏଥର ଝୁସୀ ଦେଖୀଙ୍କ ମୁହଁ ଫିଟିଲା । ସେ ଦୀର୍ଘଶ୍ୱାସ ପକାଇ କହିଲେ—"ହଁ, ନୁହେଁ ଆଉ କଣ ? ଆଉ ଛ'ଟା ମାସ ସବୁର କରିଥିଲେ ପାଶ୍ କରିଥାନ୍ତା······କଲେଜ ମାଷ୍ଟ··· ···ଜୀବନ ମାଟି ।"

—"ତମେ ଗୋଟାଏ ଜିନିଷ ଦେଖିଲଣି ମାଉସୀ ?"

—"ନାଇଁ ତ ! କଅଣ ?"

"ସରୋଜଭାଇ ଗିରଫ ହେଲାବେଳେ ସଭାରେ ଯୋଉ ବକ୍ତୃତା ଦେଇଥିଲେ, ତା ସବୁ ଖବର କାଗଜରେ ବାହାରିଚି । ତାଙ୍କ ଫଟୋ ବି ବାହାରିଚି । ମୁଁ ତ ଏକା ନିଶ୍ୱାସରେ ପଢ଼ିଗଲି ତାକୁ !"

ଝୁସୀ ଦେଖୀ କ'ଣ କହିବାର ଉପକ୍ରମ କରୁ କରୁ ନିମାଇଁ ବାବୁ ପଶି ଆସିଲେ ଭିତରକୁ, କହିଲେ, "ବୁଝିଲ, ସରୋଜ ଏଠାରେ ନାଇଁ । ତାକୁ ଅନ୍ୟ ଜେଲକୁ ବଦଳି କରି ଦିଆ ଯାଇଚି ।"

"ଆଁ !!" ଚମକି ପଡ଼ିଲେ ଝୁସୀ ଦେବୀ, "ତା'ହେଲେ ?"

—"ତା'ହେଲେ ଆଉ କ'ଣ ?"

"ଆଉ କ'ଣ ତା' ସାଙ୍ଗରେ ଦେଖାହେଇ ପାରିବ ନାହିଁ ?"

—"ହବ ଯେ··· ···"

"ମଉସା !" ମଝିରେ ନୟନା କହି ଉଠିଲା, "ତମେ ଭାଇଙ୍କୁ ଦେଖିବାକୁ ଗଲାବେଳେ ମୁଁ ଯିବି ତମ ସାଙ୍ଗରେ ।"

"ହେଁ···ହେଁ···" ସେହି ଦୁଃଖ ଭିତରେ ଟିକିଏ ହସି ପକାଇଲେ ନିମାଇଁ ବାବୁ । କହିଲେ, ପାଗ୍‌ଲି···ଆରେ, ଜେଲଖାନା ନିୟମ ଭାରି କଡ଼ା । କେବଳ ନିଜର ଲୋକ··"

"ତମେ କହିଦେବ ନାହିଁ ମୁଁ ତମ ଝିଅ ବୋଲି !!"

—"ଆରେ ! ତୁ ଆଗ ତୋ ବାପାଙ୍କୁ ପଚାର୍ । ।"

—"ଯାଉଚି ଅବିକା ପଚାରିବି । କେଉଦିନ ଯିବା ? କା'ଲି ନା ??"

—"ତୁ ଯା, ଆଗେ ପଚାରି ଆ !!"

ଆଉ କିଛି ନ କହି ବିଦ୍ୟୁତ୍ ବେଗରେ ଘରୁ ବାହାରିଗଲା ନୟନା ।

କିଛି ସମୟ ପରେ······

ନିଜ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ନିମାଇଁ ବାବୁ କହିଲେ, "ଝୁସୀ !"

—"ଉଁ ?"

—"ବୁଝିଲ ?"

—"ହୁଁ ।"

"ଆଜି-କାଲିର ଏ ଟୋକା-ଟୋକୀଙ୍କୁ ଆଉ ପାରିହବ ନାହିଁ । ମୋ ପିଲାବେଳେ ଏ ସବୁ ନ ଥିଲା ।"

ଝୁସୀ ଦେବୀ କିଛି ନ କହି ନୀରବ ରହିଲେ··· ।

*　　*　　*　　*

ଦିନପରେ ଦିନ, ମାସପରେ ମାସ, ଏଇମିତ ବିତିଗଲା ବର୍ଷଟିଏ । ଘଣ୍ଟାର କଣ୍ଟା ଅନବରତ ଟିକ୍ ଟିକ୍ ଆବାଜରେ ମାଡ଼ି-ଗୁଲିଚ ଆଗକୁ—ବେପରବାୟୁ ଭାବରେ । ଦେଶର ସ୍ୱାଧୀନତା ସଂଗ୍ରାମ ଆହୁରି ଦୃଢ଼ ପଦକ୍ଷେପ ନେଉଚି । ଭରିଯାଇଚି ଦେଶର ପ୍ରତ୍ୟେକ ଜେଲଖାନା—କେତେ ଦେଶପ୍ରେମୀ ଝୁଲୁଛନ୍ତି ଫାଶୀ-କାଠରେ କେବଳ ସେହି 'ସ୍ୱାଧୀନତା' ଟିକକ ପାଇଁ । କିନ୍ତୁ......

ଘଣ୍ଟାର କଣ୍ଟା ବର୍ତ୍ତମାନ ଦ୍ୱାଦଶ ଅଙ୍କ ଉପରେ । ବାହାରେ ରୌଦ୍ରର ପ୍ରଚଣ୍ଡ ନୃତ୍ୟ । ଭିତରେ ବସି କାନ୍ଦୁଚନ୍ତି ତୁଳସୀ ଦେଈ । ଆଖିରୁ ବାରମ୍ବାର ଲୁହ ପୋଛୁ ନିଜର ହାତକୁ ଗୁହୁଁଚନ୍ତି ଘନଘନ । କାରଣ, ହାତ ତାଙ୍କର ଆଜି ଉଲଗ୍ନ—ସୀମନ୍ତ ସିନ୍ଦୂରହୀନ । ନିମାଇଁ ବାବୁ ଆଉ ନାହାନ୍ତି—ଗୁଲିଯାଇଚନ୍ତି । ଯୋଉଠିକି ଗଲେ କେହି କେବେ ଫେରି ଆସେନା, ସେଇଠିକି ! ତୁଳସୀ ଦେଈ ଆଜି ଅନାଥା—ନିଃସହାୟା । ଠିକ ତାଙ୍କର ସାମ୍ନା କାନ୍ଥରେ ଝୁଲୁଚି ନିମାଇଁ ବାବୁଙ୍କର ଗୋଟିଏ ଫଟୋ—ବାହାଘର ବେଳର ଫଟୋ । ପଣତ କାନରେ ଥରେ ଲୁହ ପୋଛି ତୁଳସୀ ଦେଈ ଦୃଷ୍ଟି ନିକ୍ଷେପ କଲେ ସ୍ୱର୍ଗତ ସ୍ୱାମୀଙ୍କର ସେହି ନିର୍ଜୀବ ପ୍ରତିକୃତି ଉପରେ । ନିଜର ଅଜାଣତରେ, ବାଷ୍ପରୁଦ୍ଧ କଣ୍ଠରେ କହିଉଠିଲେ, "ତମେତ ଗୁଲିଗଲ...ପୁଅତ କାହା କଥା ମାନିଲା ନାଇଁ...ମୁଁ ଅବଳା କରିବି କ'ଣ ? ମତେ ବାଟ ବତାଅ...କୁଆଡ଼େ ଯିବି ?"

ବାହାରେ ଘୋଡ଼ାଟାପୁର ଶବ୍ଦ ଶୁଣି ଚମକି ପଡ଼ିଲେ ତୁଳସୀ ଦେଈ । ସେ ଉଠିଯାଇ ଝରକାବାଟେ ଅନେଇଲେ । ସତକୁ ସତ

ଗୋଟାଏ ଘୋଡ଼ାଗାଡ଼ି ତାଙ୍କ ଘରର ଦୁଆର ମୁହଁରେ ଠିଆହେଲା । କବାଟ ଫିଟେଇ ଝୁସୀ ଦେବୀ ଦେଖିଲେ, ଦୀର୍ଘ ଏକ ବର୍ଷର କାରାବାସ ପରେ ପୁଅ ସରୋଜ ତାଙ୍କର ପୁଣି ଫେରିଆସୁଛି ତାଙ୍କର କୋଳକୁ । ଝୁସୀ ଦେବୀଙ୍କୁ ଏ ଦୃଶ୍ୟ ଚଳଚିତ୍ର ଦୃଶ୍ୟ ପରି ଲାଗିଲା । ସେ ବିଶ୍ୱାସ କରିପାରିଲେ ନାହିଁ । ସେ ଯେତେବେଳେ ନିଜ ପାଖରେ ଶୁଣିଲେ "ବୋଉ !" ବୋଲି ସେତେବେଳେ ଆଖି ଖୋଲି ଅନେଇଲେ । ତା'ପରେ "ସରୋଜ !" ବୋଲି ଚିତ୍କାର କରି ଉଠି କଦଳୀ ଗଛ କାଟିଲା ପରି ତଳେ କଚ୍ଛଡ଼ି ହୋଇ ପଡ଼ିଲେ – ପରେ କ'ଣ ହେଲା ସେ ଜାଣନ୍ତି ନାହିଁ ।

## (ଚାରି)

ଘଣ୍ଟରେ ବାଜୁଛି ଦଶ ଘଣ୍ଟା ।

ଆଖି ଖୋଲିଲେ ଝୁସୀ ଦେବୀ । ବର୍ତ୍ତମାନ ତାଙ୍କର ସମ୍ପୂର୍ଣ୍ଣ ସଂଜ୍ଞା ଫେରି ଆସିଛି । କିନ୍ତୁ ସେ ଅନୁଭବ କରୁଛନ୍ତି, ସତେ ତାଙ୍କ ଦେହରୁ ସମସ୍ତ ଶକ୍ତି ଯେମିତି କିଏ କାଢ଼ି ନେଇଚି !

"ବୋଉ !..." ତାଙ୍କ ମୁଣ୍ଡ ପାଖରେ ବସି ସରୋଜ ଡାକିଲା ।

ଝୁସୀ ଦେବୀ ପୁଅର ହାତକୁ ନିଜ ଛାତି ଉପରକୁ ଟାଣିନେଇ କହିଲେ, "ସରୋଜରେ ! ତୋ ବା-ପା..." ବାସ୍ ଏତିକି । ଆଉ ସେ କହି ପାରିଲେ ନାହିଁ – କଣ୍ଠ ତାଙ୍କର ଶୁଖିଆସିଲା ।

ଅଶ୍ରୁପ୍ଲାବିତ ନୟନ, ବିଷାଦଭରା କଣ୍ଠରେ ସରୋଜ ଉତ୍ତର ଦେଲା, "ସବୁ ଶୁଣି ସାରିଲଣି ମୁଁ ବୋଉ ! ସବୁ ଶୁଣି ସାରିଲଣି ।"

× × × ×

"ଚନ୍ଦର !......"

"ଆଜ୍ଞା ?"

"ଆସିଲୁ ଇଆଡ଼େ !" ଡାକିଲି ସରୋଜ ।

ଚନ୍ଦର ଆସିଲା ।

"ଗଲୁ ଡାକଦବୁ ନୟନାକୁ !"

"ବା-ବୁ···!"

"କ'ଣରେ ?"

ଚନ୍ଦର ଅଥର୍ବ···ସ୍ଥାଣୁ···ନିର୍ବାକ୍ ।

"କରେ, ଯାଉନୁ !!"

ଥରଥର ଗଳାରେ ଚନ୍ଦର କହିବା ଆରମ୍ଭ କଲା, 'କୁଆଡ଼େ ଯିବ ବାବୁ ?'

'ମାନେ ?' ସରୋଜ କିଛି ବୁଝିପାରିଲା ନାହିଁ । ଆଖି ଆଗରେ ତା'ର ମୂର୍ତ୍ତିମନ୍ତ ହୋଇ ଠିଆ ହେଲା ଆସି ଶତ ଶତ ପ୍ରଶ୍ନବାଚକ ଚିହ୍ନ ।

'କରେ କଥା କ'ଣ ?'

'କଥା କ'ଣ ବାବୁ···' ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ଚନ୍ଦର ଆରମ୍ଭ କଲା, "ନୟନା ଦେଈଙ୍କର ପରା ବାହାଘର··"

'ଚନ୍ଦର !!' ଭୀଷଣ ଭାବରେ ଚିତ୍କାର କରିଉଠିଲା ସରୋଜ । ସେ ଚିତ୍କାରରେ ଚନ୍ଦର ଥରିଉଠିଲା ମୁହୂର୍ତ୍ତକ ପାଇଁ ।

'ବାବୁ ! ଥୟ ଧରନ୍ତୁ !! ଶୁଣନ୍ତୁ ଘଟଣା !!!' କହିଗଲା ଚନ୍ଦର, "ଯୋଉଦିନ ବାପା ନୟନା ଦେଈଙ୍କୁ ସାଙ୍ଗରେ ନେଇ ଆପଣଙ୍କୁ ଜେଲଖାନାରେ ଦେଖା କରିବାକୁ ଯାଇଥିଲେ,

ସେଇଦିନ ଫେରି ଆସିଲା ପରେ ନୟନା ଦେଈଙ୍କ ବାପା ତାଙ୍କୁ ଘର ବଡ଼େଇଲେ । ଏ କଥା ଶୁଣି ଆମ ବାବୁ(ନିମାଇଁ ବାବୁ) ଙ୍କର ତ ତାଙ୍କ ସାଙ୍ଗରେ ଏକେବାରେ ଅପଡ଼ ହେଇଗଲା ! ମଝିରେ ମଝିରେ ଲୁଚିଛପି ନୟନା ଦେଈ ଆମ ଘରକୁ ଆସୁଥିଲେ । ହଠାତ୍ ଦିନେ ଶୁଣାଗଲା, ତାଙ୍କର ବାହାଘର ହେଇଗଲା । ଘର ଥେଲାବାଲା ଘରେ ସିଏ ବା ହେଲେ । ହେଲେ କଅଣ ହବ, ଯେଉଁ ଦିନ ସିଏ ଏଠୁ ଗଲେ, ଆପଣଙ୍କୁ ମନେ ପକେଇ ଯେତେ କାନ୍ଦିଛନ୍ତି· · ·ଓଃ! ସେ କଥା ମନେ ପଡ଼ିଲେ· · ·ଗୁଡ଼ ! ଗଲା କଥା ! ତା' ପରେ ତ ଆମ ବାବୁଙ୍କୁ ଦିନୁଟାଏ ଜର ହେଲା· · · ତା' ତହିଁଆରଦିନ ତ ଆଖି ବୁଜିଲେ !"

ବୋଷେଇ ଘରେ ଥାଇ ଠୂସୀ ଦେବୀଙ୍କ କାନରେ ଚନ୍ଦିଆର ଏ କଥା ବାଜିଲା । ସେ ଉଠିଆସି ଚନ୍ଦିଆ ଉପରେ ବିରକ୍ତ ହୋଇ କହିଲେ, 'ତୁ କ'ଣ ତାଙ୍କୁ ପୁରାଣ ଶୁଣଉଚୁ ଏଠି ?'

କିଛି ନ କହି, ଅପରାଧୀଙ୍କ ପରି ମୁହଁ ଶୁଖେଇ କାନ୍ଥକୁ ଆଉଜି ଠିଆ ହେଲା ଚନ୍ଦିଆ । ସଜଳ ଆଖିରେ ସରୋଜ ଅନେଇଲା ଠୂସୀ ଦେବୀଙ୍କ ମୁହଁକୁ । ପଚାରିଲା, 'ବୋଉ ! ଏ ସବୁ ଘଟଣା କ'ଣ ସତ ?'

କଥାର ସ୍ରୋତକୁ ଛିଣ୍ଡେଇ ଦେବାପାଇଁ ଠୂସୀ ଦେବୀ କହିଲେ, 'ଗୁଡ଼ ! ଗଲା କଥା । ହଁ, ତୋ' ସାଙ୍ଗରେ ସେ ଯୋଉ ପିଲା ଦୋଟି ନୁହେଁ; ସେମାନେ ପାଶ୍ କଲେ ! !'

'ବୋଉ ! କିଏ ପାଶ୍ କଲା, କିଏ ଫେଲ୍ ହେଲା ସେ କଥା ଅବିକା ମୋ' ମୁଣ୍ଡରେ ପଶୁନି ବୋଉ ! ! ବାପା ଗଲେ· · · ନୟନା ଗଲା· · ·ମତେ ମଧ ପୁଣି· · ·'

'ଏଁ !' ଚମକି ପଡ଼ି ହସି ଦେଇ କହିଲେ, 'କ'ଣ କହିଲୁ ?'

ସ୍ୱାଭାବିକ ଭାବରେ ଉତ୍ତର ଦେଲା ସରୋଜ, 'ମତେ ପୁଣି ସେଇଠିକି ଯିବାକୁ ପଡ଼ିବ ବୋଉ ! ସେଇଠିକି ।'

'କେଉଁଠିକି ? ଜେଲଖାନା ? ପୁଣି ? ? ?'

'ହଁ ମୋର ସ୍ଥାନ ସେଇଠି ।'

'ସରୋଜ ! ଯିବା ଆଗରୁ ମତେ ମାରିଦେଇ ଯା ! !'

'ବୋଉ ! ଆଜିଠୁଁ ଧରିନେ ତୋର ପୁଅ ନାହିଁ ।'

'ସ-ରୋ-ଜ ! !...'

'ବୋ-ଉ ! !...'

ଦୁହେଁ ଦୁହିଁଙ୍କୁ ଅନେଇଁ ରହିଲେ ।

## ( ପାଞ୍ଚ )

ଛଅ ବର୍ଷ କଟିଯାଇଛି କାଳର ଅନନ୍ତ ଗର୍ଭରେ ।

ସରୋଜ ବର୍ତ୍ତମାନ ରୋଗଶଯ୍ୟାରେ ଶାୟିତ । ତିନଦିନ ହେଲା ସେ ଟିକେ ସୁସ୍ଥ ଅଛି, କିନ୍ତୁ ତା ପୂର୍ବରୁ ତା'ର ଚେତା ବୁଡ଼ିଯାଉଥିଲା ଘଡ଼ିକି ଘଡ଼ି ।

ହସ୍‌ପିଟାଲର ଗୋଟିଏ ଖଟିଆରେ ପଡ଼ିରହି ସରୋଜ ନିର୍ନିମେଷ ନୟନରେ ଚାହିଁଥିଲା ସମ୍ମୁଖ ବାତାୟନ ବାଟେ ଦୃଷ୍ଟି ଗୋଚର ହେଉଥିବା ନେଳୀଏଁ ଆକାଶ ଆଡ଼େ । ଦାୟିତ୍ୱରେ ଥିବା ସିଷ୍ଟର ଆସି ପଚାରିଲେ, 'ଆଜି କିମିତି ଫିଲ୍ କରୁଚନ୍ତି ଆଜ୍ଞା ?'

ସିଷ୍ଟରଙ୍କ ପ୍ରଶ୍ନରେ ହସିବାକୁ ଚେଷ୍ଟା କଲା ସରୋଜ, କିନ୍ତୁ ପାରିଲା ନାହିଁ । ପାଖରେ ପଡ଼ିଥିବା ଟୁଲ୍ ଉପରେ ବସିପଡ଼ିଲେ ସିଷ୍ଟର । ଆରମ୍ଭ କଲେ, 'ମୁଁ ଯେତେବେଳେ ସ୍କୁଲରେ ପଢ଼ୁଥିଲି

ସେତେବେଳକୁ ଆପଣଙ୍କ ନାଁ ଶୁଣି ଆସୁଚ । ଖବର କାଗଜରେ ପଢ଼େ, ପୋଲିସ ଆପଣଙ୍କୁ ଖୋଜୁଚି, ମାତ୍ର ଆପଣ ଧରାପଡ଼ୁ ନାହାନ୍ତି । ଅବଶ୍ୟ ସେତେବେଳେ କେହି କେବେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ଦେଶ ସ୍ୱାଧୀନ ହେବ ବୋଲି ।'

ଏଥର ଖୁବ୍ ଜୋରରେ ସରୋଜ ହସି ଉଠିଲା । ଉଃ ! ସେ ହସ କି ଭୟଙ୍କର, କି ବିକଟ ବିଦ୍ରୂପ ହସ ସତେ ! !

'ଆଚ୍ଛା ସରୋଜ ବାବୁ !' ପୁଣି ସିଷ୍ଟର ପଚାରିଲେ, 'ଆପଣଙ୍କର କ'ଣ କେହି ହେଲେ ନିଜର ଲୋକ ନାହାନ୍ତି ? କାହିଁ ? ଏତେଦିନ ହେଲା ଆପଣ ଏଠି ପଡ଼ିଲେଣି ··· ଦିନେ ହେଲେ ତ କେହି ଆପଣଙ୍କୁ ଥରେ ହେଲେ ଦେଖିବାକୁ ଆସୁ ନାହାନ୍ତି ! !'

ସେଇମିତି ଶୋଇ ରହି ସରୋଜ ଉତ୍ତର ଦେଲା, 'ସିଷ୍ଟର ! ଯେତେବେଳେ ମୁଁ ପ୍ରଥମେ ଗିରଫ ହେଲି, ଆଉ ଏକ ବର୍ଷ କାଳ କାରାବାସ ଭୋଗ କରି ଘରକୁ ଫେରିଲି, ସେତେବେଳକୁ ବାପାଙ୍କର ମୃତ୍ୟୁ ଘଟି ସାରିଥିଲା । ଦ୍ୱିତୀୟ ଥର ଜେଲଖାନାରୁ ଫେରି ଦେଖିଲି ମା' ମଧ୍ୟ ବାପାଙ୍କ ବାଟ ଧରିଚନ୍ତି । ତେଣୁ ବର୍ତ୍ତମାନ ସମସ୍ତେ ମୋର ନିଜର··· ଦେଶ ମୋର ଆଜି ସ୍ୱାଧୀନ ।'

ସିଷ୍ଟର ଟିକେ ବିବ୍ରତ ହେଲାପରି ଜଣାପଡ଼ିଲେ । ଦୁର୍ବଳତାକୁ ଘୋଡ଼ାଇବାକୁ ଯାଇ ଉଠି ଠିଆହୋଇ କହିଲେ, 'ହେଉ, ମୁଁ ବର୍ତ୍ତମାନ ଯାଉଚି । ମୋର ଡିଉଟି ସରିଗଲା । ଆପଣଙ୍କ ଦାୟିତ୍ୱ ବର୍ତ୍ତମାନ ସିଷ୍ଟର ମେରୀଙ୍କ ଉପରେ ।"

'ଆଚ୍ଛା, ଟିକେ କହିବେକି' ପଚାରିଲା ସରୋଜ, 'ମୋ ଦେହ ଏପରି ଦରଜ ଲାଗୁଚି କାହିଁକି ? କି ରୋଗ ଇଏ ? କ'ଣ ଏଇ ହସ୍ପିଟାଲରେ···'

'ଆପଣ ନିଶ୍ଚିନ୍ତ ରହନ୍ତୁ ! ସାମାନ୍ୟ କଥାରେ ଆପଣଙ୍କ ପରି ଲୋକ ଏପରି ବିଚଳିତ ହେଲେ ଚଳିବ ? ଆଜିକାଲିର ଉନ୍ନତ ମେଡ଼ିକାଲ ସାଇନ୍ସ ଆଗରେ କେତେ କେତେ ଦୁଃସାଧ୍ୟ ରୋଗ ମୁଣ୍ଡ ନୁଆଁଉଛି ।'

"ମତେ ଏ ବୃଥା ସାନ୍ତ୍ୱନା କାହିଁକି ଦଉଛ ସିଷ୍ଟର ? ସ୍ୱାଧୀନତା ଯୁଦ୍ଧବେଳେ ମତେ ବହୁବାର ଆତ୍ମଗୋପନ କରି ଲୁଚିଛପି କାମ କରିବାକୁ ପଡ଼ୁଥିଲା । ସେତେବେଳେ ମୋର 'ବଞ୍ଚିବା' ଦେଶ ପାଇଁ ଥିଲା, କିନ୍ତୁ ମୁଁ ବର୍ତ୍ତମାନ ଚାହେଁ 'ଆତ୍ମଗୋପନ'··· ମାନେ···ମୃତ୍ୟୁ । ମୁଁ ଚାହେଁ ଫେରାର ହେବାକୁ ।"

*　　　*　　　*

"ଜଣେ ଭଦ୍ରମହିଳା ଆପଣଙ୍କୁ ଦେଖିବାକୁ ଆସିଛନ୍ତି ।" ଦାୟିତ୍ୱରେ ଥିବା ସିଷ୍ଟର ମେରି କହିଲେ ।

ସରୋଜ କହିଲା, "ଡାକିଦିଅ !"

ମହିଳାଙ୍କୁ ସଙ୍ଗରେ ଧରି ସରୋଜର ଖଟିଆ ପାଖରେ ଆସି ଠିଆ ହେଲେ ସିଷ୍ଟର ମେରି, ତା'ପରେ କହିଲେ, "କଥାବାର୍ତ୍ତା କରୁଥାନ୍ତୁ ।" ମୁଁ ଟିକେ ଫିମେଲ ୱାର୍ଡ଼ରୁ ଆସେ । ଏତିକି କହି ସେ ଚାଲିଗଲେ ।

ମହିଳାଙ୍କ ମୁହଁକୁ ଅନେକ ବେଳଯାଏ ଚାହିଁଲା ସରୋଜ । ତା ପରେ ହଠାତ୍ ଚିତ୍କାର କରି ଉଠିଲା, "କିଏ ତମେ ? ନୟନା !"

"ହଁ, ମୁଁ ନୟନା ସରୋଜ ଭାଇ !"

"ତମେ ଏଠିକି କିମିତି ଆସିଲ ନୟନା ? ?"

"ସରୋଜ ଭାଇ !" ଥର ଥର ଗଳାରେ କହିଲା ନସୂନା, "ଦେଶ ସ୍ୱାଧୀନ ହେଲା ପରେ ତମର ଖବର ମୁଁ ବରାବର ନେଉଛି । ତା'ଆଗରୁ ଅବଶ୍ୟ ମୁଁ ନେଇ ନ ଥିଲି ! କାରଣ, ମୁଁ ଜାଣିଥିଲି, ତମେ କୌଣସି ନା କୌଣସି ଜେଲଖାନାରେ ଥିବ ! !"

"ହଁ, ନସୂନା !" ଧୀର ଏବଂ ଶାନ୍ତ ସ୍ୱରରେ ସରୋଜ କହି ଚାଲିଲା, "ଦେଶ ସ୍ୱାଧୀନ ହେଲା ସତ, କିନ୍ତୁ ମୋ ପାଇଁ ସ୍ଥାନ କେଉଁଠି ହେଲେ ନାହିଁ । ଅଛି କେବଳ ଦୁଇଟି ସ୍ଥାନ । ଗୋଟିଏ ହେଉଛି ରାସ୍ତାର ଫୁଟପାଥ୍, ଅନ୍ୟଟି ହେଉଛି ଏଇ ହସ୍‌ପିଟାଲର ଖଟିଆ । ନସୂନା ! ବାପା, ବୋଉ ସମସ୍ତେ ଚାଲିଗଲେ; ଛାଡ଼ !" କହୁ କହୁ ସରୋଜର କଣ୍ଠସ୍ୱର ଥର ଉଠିଲା, 'କୁହ ! କୁହ ନସୂନା ! ! ତମେ···ତମେ···ସୁଖରେ ଅ-ଛ-ତ··· ?'

"ସରୋଜ ଭାଇ ! !" ନସୂନାର ଆଖିର ଲୁହ ଅଉ ବାଧା ମାନିଲା ନାହିଁ ।

"ତମେ କାନ୍ଦୁଛ ? ନା, କାନ୍ଦ ନା ମୋ ପାଇଁ, ତମେ କାହିଁକି କାନ୍ଦିବ ! ମୁଁ ଆଉ ରୋଗମୁକ୍ତ ହୋଇ ପାରିବିନି । ମୋର ଅନ୍ତିମ ମୁହୂର୍ତ୍ତ ବର୍ତ୍ତମାନ ଉପସ୍ଥିତ । ଯାଅ ! ତମେ ଚାଲିଯାଅ ! ! ମୁଁ ଚାଲିଲି ।" କହୁ କହୁ ସରୋଜର ଶୁଷ୍କ ମଳିନ ଅଧରର ଝଡ଼ ପରି ଗୋଟାଏ କାଶ ଉଠିଲା—ଯୋଉ କାଶ ସହିତ ପେଟ ଭିତରୁ କଳା କଳା ବଦଳିଆ ରକ୍ତ ଝଲକାଏ ବାହାରି ଆସିଲା ବାନ୍ତି ଆକାରରେ ପଦାକୁ !

ଭେଁ କରି ଛୋଟ ପିଲାଙ୍କ ପରି କାନ୍ଦି ଉଠି ନସୂନା ଡାକ ଦେଲା "ସିଷ୍ଟର ! ସିଷ୍ଟର ! !" ଠିକ୍ ତା'ପରେ ପରେ ସରୋଜର ସଂଗ୍ରାମୀ

ଆଖି ଦୁଇଟି ନବାଣୋନ୍ମୁଖୀ ଦୀପ ଶିଖା ପରି ଦପ୍‌କରି ଜଳି ଉଠି ଲିଭିଗଲା ।

ମିଷ୍ଟର ଓ ଡାକ୍ତରମାନେ ଆସିଲା ବେଳକୁ ସରୋଜର ମୃତ ଅବୟବ ନିଶ୍ଚଳ ଭାବରେ ପଡ଼ି ରହିଥିଲା ସେଇ ଖଟିଆ ଉପରେ । ବାହାର ରାସ୍ତାରେ ଶୁଭୁଥିଲା ସ୍ଲୋଗାନ୍—ସହରର ଛକ ଅତିକ୍ରମ କରୁଥିଲା ଚତୁର୍ଥ ବାର୍ଷିକ ସ୍ୱାଧୀନତା ଦିବସର ଶୋଭାଯାତ୍ରା ।



ଢେଙ୍କାନାଳ,
ଅକ୍ଟୋବର ତା ୩, ୧୯୫୭

## ମୃତ ଅରୁଣିମା

ପ୍ରଚଣ୍ଡ ନିଦାଘ······
ନିଃଶଙ୍କ, ରୌଦ୍ର-ଦଗ୍ଧ ପଥ···
ରାସ୍ତାରେ ଖରା ନାଚୁଛି···

···ବସାକୁ ଫେରୁଛି ଅଭିରାମ । ମୁଣ୍ଡ ଘୂରାଉଛି···ମନ ଅସ୍ଥିର । ସେଠିଣେ ସ୍ତ୍ରୀ ପ୍ରମିଳା ଅପେକ୍ଷା କରି ବସିଥିବ ! ଅଭିରାମ ଗଲେ ରାଗିଯିବ ହବ ।

ବସାରୁ ଗୋଡ଼ କାଢ଼ିଲାବେଳେ ଅଭିରାମ ଆଶା କରିଥିଲା, ଆଜ ମାଲିକଠୁ 'ଆଗତୁରା' କିଛି ଟଙ୍କା ଆଣି ଗୁଜୁରାଣଟା ମେଣ୍ଟେଇ ହବ ।

ମାସିକ ପଚାଶ ଟଙ୍କା ବେତନରେ ଚମନ୍‌ଲାଲ ଲୁଗା ଦୋକାନରେ ସେ 'ସେଲ୍‌ସ୍ ମ୍ୟାନ୍' । ଆଜକାଲି କାଳକୁ ପଚାଶଟା ଟଙ୍କା ବା କୋଉଥିକି ପାଏ । ନିଜ ସ୍ତ୍ରୀ, ନିଜେ ଅଭିରାମ, ତିନି ବର୍ଷର ପୁଅ 'ଗୋରା' । ସେଥିରେ ପୁଣି ପୂଜାଅଁ-ପରବ, ଯାନି-ଯାତ୍ରା, କୁଣିଆଁ-ମଇତ୍ର, ରୋଗ-ବାଧକା, ଏଇମିତି କେତେ କ'ଣ ଅଛି !!

ଅଭିରାମ ଚାଲିଛି ବସାମୁହାଁ ହୋଇ ।

ମନରେ ଦମ୍ଭ ନାହିଁ···ପାଦରେ ଶକ୍ତି ନାହିଁ···ବୁକୁରେ ନାହିଁ ଧୈର୍ଯ୍ୟ । ଗୋଟାକ ପରେ ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ିକରି ସେ ମାଡ଼ିଚାଲିଛି ଆଗକୁ । ଯୋଉ ଆଶା ନେଇ ସକାଳୁ ସେ ଗୋଡ଼ କାଢ଼ିଥିଲା ବସାରୁ, ସେ ଆଶା ତା'ର ନିରାଶାର ଅତଳ ପାରାବାରରେ ଲୀନ ହୋଇଯାଇଛି ।

"ତୁମେ ଦୁସ୍ରା ଜାଗାରେ ନୌକରୀ ଦେଖ ! ଦୁକାନ୍‌କୁ ତୁମେ ନୁକ୍‌ସାନ୍ କରିଦେବ । ଯାଓ !···ଭାଗୋ !!···" ମାଲିକ ଚମନ୍‌ଲାଲ କଣ୍ଠର ମନ୍ଦ୍ର ମେଘ-ଗର୍ଜନ ।

ଅଭିରାମର ଦୋଷ ବା କ'ଣ ! ଦେହଟା ଠିକେ ଭଲ ନ ଥିବାରୁ ଦି'ଟା ଦିନ ସେ ଦୋକାନକୁ ଯାଇ ନ ଥିଲା । ଗୁଣ୍ଡ ! ଏମାନଙ୍କ ଆଗରେ ଆବେଦନ-ନିବେଦନ, କାକୁତି-ମିନତି ଏକ ମସ୍ତବଡ଼ ତାମସା । ମୁଠାଏ ଭାତ, ଖଣ୍ଡିଏ କନା, ଗୋଟିଏ ବାସଗୃହ, ଟିକିଏ ସୁଖପାଇଁ ମଣିଷ ଲଢ଼େଇ କରୁଛି ପ୍ରାଣମୂର୍ଚ୍ଛା—ବିଶ୍ୱବ୍ୟାପି ଅନବରତ ଚାଲିଛି ଏକ ଦୌଡ଼—ଜୀବନ ସହିତ ମରଣର । କିଏ ଜାଣେ, କାହାର ହେବ ଜିତାପଟ !!

× × × ×

ଓଃଃ, ମୁଣ୍ଡଟା ! ବୁଲେଇଲା······

···ଶୋଷ ବି ହେଲାଣି ପ୍ରବଳ !

ଉତ୍ତପ୍ତ ପିଚୁରାସ୍ତାକୁ ପଛରେ ପକାଇ, ନର୍ଦ୍ଦମାର କାଠ ପଟାକୁ ଅତିକ୍ରମ କରି କେତେବେଳେ ବସା ଦୁଆର ମୁହଁରେ ଆସି ପହଞ୍ଚିଲାଣି ଅଭିରାମ;—ସେକଥା ତା' ନିଜକୁ ମଧ୍ୟ ମାଲୁମ ନାହିଁ !;

ବାହାରେ ଠିଆହୋଇ ସେ କାନ ପାରିଲା······

ସ୍ତ୍ରୀ ପ୍ରମିଳା 'ଗୋପି'କୁ ବୁଝେଇ-ସୁଝେଇ କ'ଣ ଖୋଉଛି ।

''ଗୋପି ! ମୋ' ସୁନାଟା ପରା···ନେଃ ! ଏଇ ଗୁଣ୍ଡାକ ଖାଇଦେ ! ! ହେଇ ! ବାପା ଅବକା କଦଳି ଆଣିବେ···ମୋ' ପୁଅ ଖାଇବ···ଅ···ଅ···,ଆ'ରେ କାଉ ! ଆ !···ଆ !!···ଆ !!!···''

କିନ୍ତୁ ଅଜ୍ଞାନ ଛୁଆ କ ସେକଥା ବୁଝେ !

''କହୁଛି, ଚୁପ୍ କରି ଖାଇଦେ । ନଇଲେ ତୋ' ପିଠି ମୋ' ହାତ ! ହଁ···ଅଁ ···ଅଁ ···!!''

ଗୋପି ଖାଇଲା ନାହିଁ—ମୁଣ୍ଡ ହଲେଇଲା ।

''କଁ କଇଲୁ ? ଖାଇବୁ ନାହିଁ ??'' ଠାଏ କରି ଚଟକଣାଟାଏ ପ୍ରମିଳା ବସେଇ ଦେଲା 'ଗୋପି' ଗାଲରେ । ଭେଁ, ଭେଁ, ହେଇ ରଡ଼ି ଛାଡ଼ିଲା 'ଗୋପି' ।

ଦୁଆର ମୁହଁରେ ଠିଆ ହୋଇ ସ୍ଥାଣୁ ପାଲଟି ଯାଇଥିଲା ଅଭିରାମ, 'ମମତା' ତା'ର ଆଜି ବାଧାପ୍ରାପ୍ତ —କାହିଁକି? ମନ ତା'ର ବଢ଼େଇ ଉଠିଲା ପ୍ରମିଳା ଉପରେ । ପରମୁହୂର୍ତ୍ତରେ ସେ ଚେତନଶୀଳ ହେଲା । ଭାବିଲା, 'ତାକୁ ଦୋଷ ଦେଇ ବା ଲାଭ କ'ଣ ! ନାରୀ ପ୍ରଥମେ 'ସ୍ତ୍ରୀ' ରୂପରେ—ପରେ ହୁଏ, 'ମା' । ସାଂସାରିକ ଅଭାବ-ଅନାଟନ ସେ ନିଜ ଅଙ୍ଗେ ନିଭାଏ । ହେଲେ ଏ ଅଜ୍ଞାନ ଛୁଆର କି ଅପରାଧ ? ତାକୁ ମାଡ଼ ଦେଇ ଫାଇଦା କ'ଣ ??''

''କେତେ କାହାକୁ ମୁଁ ଆଉ ସନ୍ତୁଳି ହେବି !!'' ଅଭିରାମ ଭାବନାର ଅଳନ୍ଧୁ ଠେଲି ଭିତରୁ ଶୁଣାଗଲା ପ୍ରମିଳାର ଗର୍ଜନ, ''ସକାଳ ପହରୁ ଲୋକୁଟାଏ ଗଲାଣି ଯେ, ଛାଇ ନୋଉଟିଲାଣି ଆସି···ଦେଖା ନାହିଁ ନା ଦର୍ଶନ ନାହିଁ !!!''

ଏଥରକ ଭିତରକୁ ପଶିଲା ଅଭିରାମ ।

''ପେମା ! କାହିଁକି ଇମିତି ପାଟି କରୁଛ ?''

"ରଖିଦିଅ ସେ ଶୁଆଗିଆ କଥା ଗୁଡ଼ାକ !" ମୁହଁ ଘୁରେଇ ଦେଇ ପ୍ରମିଳା କହିଲା, "କ'ଣ ? ଠଙ୍କା ମିଳିଲା ??"

"ନାଇଁ !"

"ଫୁଲୁଣି ?···"

"ପେମା !" ବାଷ୍ପରୁଦ୍ଧ ହୋଇ ଆସିଲା ଅଭିରାମର କଣ୍ଠସ୍ୱର "ଜାଣିଚ କ'ଣ ହେଇଚ ?"

"କଅଣ ?"

"ଆଜଠୁଁ ମାଲିକ ମତେ ତଡ଼ିଦେଲା !"

"ସକାଳେ ଲୁଆଟା ପାଇଁ ଅରୁଆ ଗୁଣ୍ଡିଲା ଦି'ଟା ଫୁଟେଇ ଥେଲି । ଆଜି କ'ଣ ପୋଷେଇବାକୁ ପଡ଼ିବ ! ଭାବୁଥିଲି ତମେ ଆସିଲେ·····"

"ଥାଉ···ଥାଉ ପେମା ! ମତେ ଆଉ ସେ ଗୁଡ଼ାକ କୁହନା !"

ଅଭିରାମର କାତର ଅଥଚ ଆକୁଳ ନିବେଦନ ।

"ଆ'ହା···ହା···ହା···!!"

"ପେ···ମା···ଆଁ···ଆଁ···!"

"...........…"

ନିଜ ସ୍ତ୍ରୀର ଏ ରୁକ୍ଷ ବ୍ୟବହାରରେ ନିଜକୁ ନିଃସହାୟ ମନେକଲା ଅଭିରାମ ।

* * *

କ୍ଲାନ୍ତ ସୂର୍ଯ୍ୟ ତଳି ପଡ଼ିଚନ୍ତି ପ୍ରତୀଚୀ ଦିଗ୍‌ବଳୟରୁ ତଳେ— ଇଶାଣ କୋଣରୁ ମୁହଁ ଦେଖେଇଚ ଖଣ୍ଡେ କଳାହାଣ୍ଡିଆ ମେଘ । ବର୍ଷା ବୋଧେ ହବ ଏଇଖିଣା !

ସନ୍ଧ୍ୟା······

ସ୍ତିମିତ ଦୀପାଲୋକ । ତା'ର ସେହି ଅସ୍ପଷ୍ଟ ଆଲୋକରେ ଅଭିରାମ ଥରେ ଆଖିବୁଲେଇ ଦେଖିନେଲା ନିଜର ଶୟନ-ଘରର ଶ୍ରୀହୀନ ଚେହେରାକୁ । ଘର କୋଣଟିରେ ରାଜୁତି କରୁଛି ଦୀର୍ଘ ନୀରବତା । ଛାତରୁ ଝୁଲି ଝୁଲି ପଡ଼ୁଛି ଛିଣ୍ଡା ଝାଳିଆ, ଚକଟା, କଲା, କତରା, କଂସା, ଡାଳିଆ । ଗୋରା ଶୋଇଛି । ଶେଯ ପାଖକୁ ଲାଗି ଗୋଟିଏ ଡାଳିଆରେ ଥୁଆହୋଇଛି ସକାଳର ମେଞ୍ଚେ ଅରୁଆ ଜାଉ— 'ଅଜଗର' ପରି ବଂକେଇ ହୋଇ ଧାଡ଼ି ଲାଗିଛନ୍ତି ପିମ୍ପୁଡ଼ି ।

କିଛି ସମୟ ନୀରବରେ ଏହି ଦୃଶ୍ୟ ଦେଖିଲା ପରେ, ଅଭିରାମର ଛାତି ମଝିରୁ ଗୋଟାଏ ମଞ୍ଜି ଦୋହଲା, ପଞ୍ଜରାଥରା ଦୀର୍ଘଶ୍ୱାସ ବାହାରି ଆସିଲା ପଦାକୁ—ସଇତାନୀ ଡୁହାରେ । ପାଟିରୁ ଶୁଭିଲା, "ଭ···ଗ···ବା···ନ୍···"

ପାଞ୍ଚବର୍ଷ ତଳକୁ ଫେରିଗଲା ଅଭିରାମ ।

ହଁ, ତା'ର ଠିକ୍ ମନେ ଅଛି ! ସେତେବେଳେ ବାପ-ମା' ତା'ର ଜୀବିତ ଥିଲେ—ସେଦିନ ଥିଲା ଜ୍ୟୋତ୍ସ୍ନାବିଧୌତ ଏକ କମନୀୟ ରଜନୀ । ତାରା ବନ୍ଧୁର ମେଘମୁକ୍ତ ଆକାଶର ନେଳିଆ ଛାତିରେ ଅସଂଖ୍ୟ, ଅଗଣିତ ତାରକା ଥିଲେ ସେଦିନର ମୂକସାକ୍ଷୀ । ଯେତେବେଳେ ପ୍ରମିଳାର ନରମ ହାତଟିକୁ ଅଭିରାମ ହାତରେ ଆଣି ଛନ୍ଦି ଦେଇଥିଲେ ଗୁରୁଜନମାନେ, ସେତେବେଳେ ସେ ଭାବିଥିଲା, ପ୍ରମିଳା ତା'ର ସହଧର୍ମିଣୀ । ସ୍ୱାମୀର ହସ-କାନ୍ଦ, ସୁଖ-ଦୁଃଖ ସହିତ ତାଳ ଦେଇ ଚାଲିବ ନିଶ୍ଚୟ !

କିନ୍ତୁ ହାୟ ! ସେ ଆଶାର ଦୀପ ତା'ର ଲିଭିଯାଇଛି— ଜୀବନ-ଆକାଶରେ ଘୋଟି ଆସିଛି ନିରନ୍ଧ୍ର ଅନ୍ଧକାର । ପ୍ରମିଳା ଆଜ

ଅତି ନିର୍ମମ ଭାବରେ ପ୍ରତିଶୋଧ ନେଉଛି ନିଜ ଅର୍ଥନୈତିକ ଦାସତ୍ୱ-ବନ୍ଧନର ।

"ଉଃଃଃ" ଆହୁରି ଗୋଟାଏ ଦୀର୍ଘ ନିଃଶ୍ୱାସ ପକେଇଲା ଅଭିରାମ । ଧନେହେଲେ ଶାନ୍ତିରେ ଘଡ଼ିଏ ସେ ନିଃଶ୍ୱାସ ମାରି ପାରିଲା ନାହିଁ । ବସି ବସି ସେ ଭାବିବାକୁ ଲାଗିଲା, "ମୃତ୍ୟୁ ପର୍ଯ୍ୟନ୍ତ ମୁଠାଏ ଭାତପାଇଁ ଯୁଝିବାକୁ କ'ଣ ମଣିଷର ସୃଷ୍ଟି !!"

ଦିନକର ଘଟଣା ···

ଅ'ଧକରୁ ଗଡ଼ିଗଲାଣି ରାତି—ବର୍ଷା ପଡ଼ିବାକୁ ଆରମ୍ଭ କରିଛି ବାହାରେ । ଆକାଶରେ ମେଘର ଘନଘଟା···ବତାସର ହୁଂକାର···ବିଜୁଳିର ନର୍ତ୍ତନ । କାନ୍ଥ ଠଣାରେ ମିଞ୍ଜି ମିଞ୍ଜି ହୋଇ ଡିବି ଜଳୁଛି···ଗୋରାକୁ ପାଞ୍ଚ ଦିନ ହେଲା ଜର—ପେଟ ଫମ୍ପେଇଚି ଜର ବଢ଼ୁଚି···ଗୁଡିରେ ଜମିଚି କଫ । ନାକ ପୁଡ଼ା ଦି'ଟା ଓଲଟିଆଜ ଭଳି ରଙ୍ଗ—ଉଠୁଚି, ପଡ଼ୁଚି । ଆଖି ଦି'ଟା ବନ୍ଦ—ପଶ୍ରସ୍ରା ମୋଟେ ହଉନାହିଁ—ଚେତା ନାହିଁ 'ଗୋରା'ର ।

ଏ ସବୁ ଘଟଣା ଦେଖି ଅଭିରାମର ମନ-ଆକାଶରେ ଘୋଟି ଆସିଲା ଆଶଙ୍କାର ଖଣ୍ଡେ କଳା ମେଘ—ମନରେ ତା'ର କେତେ ପାପ ଛୁଇଁ ଗଲା !

କିଛି ସମୟ ପରେ······

ଓଦା ହାତଟାକୁ ଲୁଗା କାନରେ ପୋଛୁ ପୋଛୁ ଭିତରକୁ ପଶିଆସିଲା ପ୍ରମିଳା । ଗୋରା ଶେଯ ପାଖରେ ବସିପଡ଼ି ଡାକିଲା, "ଗୋରା !···ଗୋରା !!···

କିନ୍ତୁ କିଛି ଉତ୍ତର ନାହିଁ !

"ହେଁ ମୋ' ପୁ-ଅ·····" ଚିତ୍କାର କରି ଉଠିଲା ପ୍ରମିଳା ।

"ଆରେ ! ସିମିତିଟା କାହିଁ ହଉଚ ମ ! ପେମା ! ପେମା !!"

"ହେଇତି !" ଥର ଥର କଣ୍ଠରେ ପ୍ରମିଳା କହିଲା, "ସିବିଛି ଟିକେ ଡାକ୍ତରଙ୍କ କଡିକ !! ପୁଅ ମୋର କାହିଁ ଗୋଟିସୁଦ୍ଧା କଳା କାଠ ପଡ଼ିଗଲାଣି !!!"

ଡାକ୍ତର ଡାକିବାକୁ ଗଲେ 'ଫିସ୍' ଦରକାର···

ଘରେ ଗୋଟାଏ ଅଧଲା ନାହିଁ ।

"ପେମା !" ଅଭିରାମ କହିଲା, "ପଇସାପଇଶ ତ···"

"ନେଇଯାଅ ମୋ' ମୁଦିଟା !!"

ନିଜ ଆଙ୍ଗୁଠିରୁ ସୁନା ମୁଦିଟାକୁ କାଢ଼ି ଅଭିରାମ ଆଗକୁ ପକେଇ ଦେଲା ପ୍ରମିଳା, "ଯାଅ ! ଚଞ୍ଚଳ ଯାଅ !!"

ଆଉ କାଳ ବିଳମ୍ବ ନ କରି ଘନ୍ଟୁ ଝଡ଼ ବେଗରେ ବାହାରି ଗଲା ଅଭିରାମ । କଟିକଟିଆ ଅନ୍ଧକାର····.ମୁହଁକୁ ମୁହଁ ଦିଶୁନାହିଁ ରାସ୍ତାରେ ଗୋଡ଼ ନ ଦଉଣୁ କାଚିଲା ବର୍ଷା । ନା, ଆଉ ଠିଆ ହବାକୁ ବେଳ ନାହିଁ ।' ସେଇ ଅନ୍ଧକାର ଆଉ ବର୍ଷା ଭିତରେ ଚନ୍ଦ୍ରବୁଡ଼ ଆଗେଇ ଚାଲିଲା ଅଭିରାମ । କିନ୍ତୁ ଯିବ କୋଉଠିକି । ରାତି ଆସି ଅଧ ହେଲାଣି । ରୁଙ୍ଗୁଲୁ ନାଇଡ଼ୁ ଘରକୁ ଗଲେ ଅବା ତା' ପାଖରେ ମୁଦିଟା ବନ୍ଧା ଥୋଇ କିଛି ଟଙ୍କା ଆଣନ୍ତା ! ସିଏତ ଶୋଇଥିବ ! ତା'ଘରେ ଯୋଉ ହିଂସ୍ର ଆଲସେସିଆନ୍···ବା··· ପରେ···ବା···ଆପ୍, ସାକ୍ଷାତ ସିମିତି ଯମ !!

ବର୍ଷା ଟିକେ କମିଲା ।

ଥରେ ଏପାଖରୁ ସେପାଖ ଗୃହଆଡ଼କୁ ଅନେଇଲା ଅଭିରାମ । କେଉଁଠି କୁଆଡ଼େ ନାହିଁ···ଗର୍ଜନ କରୁଛି ମେଘ ସନ୍ନିଭ ଅତୃପ୍ତ ଅନ୍ଧକାର ରାତ୍ରି । ହେଇ, ପୁଣି ମାଡ଼ି ଆସୁଛି ଅସରାଏ ବର୍ଷା । 'ନା ଆଉ ଉପାୟ ନାହିଁ ।' ଡାକ୍ତର ବାବୁଙ୍କ ଘରମୁହାଁ ହୋଇ ଦୌଡ଼ିବାକୁ ଆରମ୍ଭ କଲା ଅଭିରାମ ।

*　　　*　　　*

"ବାବୁ !···ବାବୁ !!···" କବାଟରେ ବାରଂବାର କରାଘାତର ପ୍ରତିଧ୍ୱନିରେ ଉଠି କବାଟ ଖୋଲିଲେ ଡାକ୍ତରବାବୁ ।

"କିଏ ?"

"ମୁଁ ଅଭି ଆଜ୍ଞା ।"

"ଏତେ ରାତିରେ ?"

ସମସ୍ତ ଘଟଣା କହିଗଲା ଅଭିରାମ ।

ଡାକ୍ତର 'ଫିସ୍' ଚାହିଁଲେ ପନ୍ଦର ଟଙ୍କା । ଅଭିରାମ ମୁଣ୍ଡ ଘୂରିଗଲା—ଆଖି ଜକେଇ ଆସିଲା ଲୋତକରେ । ସେ ବସିପଡ଼ି, ପ୍ରମିଳାର ମୁଦିଟାକୁ ତଳେ ଥୋଇ ଦେଇ, ଡାକ୍ତରଙ୍କ ପାଦ ଦୁଇଟିକୁ ଧରି ଅତି ବିକଳ ଭାବରେ କହିଲା, "ରାତିଅଧରେ ମୁଁ ଟଙ୍କା କୋଉଠୁ ପାଇବି ଆଜ୍ଞା ? କୁଆଡ଼େ ମୋର ସିଆଡ଼େ ସୁକୁ ସୁକୁ········"
ବାସ୍, ଆଉ ସେ କହିପାରିଲା ନାହିଁ, କଣ୍ଠ ତା'ର ଶୁଖି ଆସିଲା ।

"ଠନ୍ !·····ଠନ୍ !!···ଠନ୍ !!!···" ରାତି ତିନିଟା ବୋଲି ଘୋଷଣା କଲା କ୍ଲେକ୍ଟର ଘଣ୍ଟା । ଡାକ୍ତର ବାବୁଙ୍କୁ ସାଙ୍ଗରେ ଧରି ଆସି ବସାରେ ପହଞ୍ଚିଲା ଅଭିରାମ । ପ୍ରମିଳା ଗୃହକ ପରି ଅନେଇ ବସିଛି···ଭାବ କଳୁଛି ।

ଡାକ୍ତରଙ୍କୁ ଦେଖି ସଜାଡ଼ି ହୋଇ ବସିଲା ପ୍ରମିଳା ।
ଡାକ୍ତର ରୋଗୀକୁ ପରୀକ୍ଷା କଲେ……

କହିଲେ, ଡାକ୍ତର "ଇଏ ଡବଲ ନିମୋନିଆଁ ।"
ଅଭିରାମ ଛାତିରୁ ଯେମିତି ନିଆଁ ଖସିଲା ! ସେ ପଚାରିଲା, "କଣ ହବ ତାହାହେଲେ ଆଜ୍ଞା ?"

ଡାକ୍ତର କିଛି କହିଲେ ନାହିଁ । 'ସିରଞ୍ଜ' କାଢ଼ି ଫୋଡ଼ିଦେଲେ ଗୋଟାଏ 'କୋରାମିନ୍' ଇଞ୍ଜେକ୍‌ସନ । 'ସଲ୍‌ଫା' ଟାବଲେଟ୍ ଗୁଡ଼ାଏ ଦେଇ କହିଲେ, "ତା' ଚେତା ଆସିଲେ ଏ ବଟିକାରୁ ଫାଳେ ଲେଖେଁ ପ୍ରତି ଅଧ ଘଣ୍ଟାରେ ଚିନିପାଣି ସହିତ ଖାଇବାକୁ ଦବ ।"

ତା'ପରେ……

ଚର୍‌ର୍, ଚର୍‌ର୍ କରି ଖଣ୍ଡେ କାଗଜରେ କ'ଣ ଗୁଡ଼ାଏ ଲେଖି, ବଢ଼େଇ ଦେଲେ ଏକ ଲମ୍ବା-ଚଉଡ଼ା ପ୍ରେସ୍‌କ୍ରିପ୍‌ସନ୍ । ପରୀକ୍ଷାଲବ୍ଧ 'ପେନ୍‌ସିଲିନ୍', କମଳା, ପଇଡ଼ ଇତ୍ୟାଦି ଗୋଟାଏ ମୋଟ୍ ପଚାଶ ଟଙ୍କାର ଏକ ଲମ୍ବା-ଚଉଡ଼ା ତାଲିକା !
ଘରୁ ବାହାରିଗଲେ ଡାକ୍ତର ବାବୁ ।

× × ×

"ଖ୍ୱୋ…ଓ…ଓ…"

ଗୋଟାଏ କୁକୁର କୋଇଁଠ ବାହୁନିଲା—ପେଚାଏ ଗୋଟାଏ ରଡ଼ି ଉଠିଲା, ପରଚ୍ଛିଡ଼ ପାଖ ଅୁଣ୍ଡା ସଜନା ଡାଳରେ । ଚୁଚୁନ୍ଦ୍ରା ଟାଏ

ଚେଁ··ଚେଁ··ହୋଇ ଘରୁ ବାହାରିଲା ପଦାକୁ—ଝିଟିପିଟିଟାଏ ଆସି ଲଥ୍‌କିନି କରୁଡ଼ ହୋଇ ପଡ଼ିଲା ଗୋଇ ଗୁଡି ଉପରେ ।

ଧପ୍ ଧପ୍ ହୋଇ ଥପ୍‌କିନି ଲିଭିଗଲା ବତିଟା । "ହେଁ ମୋ ଗୋଇ କୁଆଡ଼େ ଗଲା ଲୋ······" ମୁଣ୍ଡଟା ଡ଼ୁ' କରି ତଳେ ପିଟିଦେଲା ପ୍ରମିଳା—କାଠ ପାଲଟି, କାନ୍ଥକୁ ଆଉଜି ଠିଆ ହୋଇଥିଲା ଅଭିରାମ ।

ପ୍ରଭାତର ସୂର୍ଯ୍ୟ ଚକ୍ରବାଳର ବୁକୁ ବିଦୀର୍ଣ୍ଣ କରି ଉଠିଆସୁଥିଲେ ଉପରକୁ ।

ଅଗଷ୍ଟ ନ'ଅ (୧୯୫୭)
ଢେଙ୍କାନାଳ ଜେଲ୍, ରାତି ୨ଟା

# ଜନପଦର ଛନ୍ଦ

'ଗରବେଶ୍ୱରୀ' ଠାକୁରାଣୀଙ୍କ 'ଚାଲ୍‌ତୋଟା'ରୁ ବାହାର 'ଶୁଆଖାଇ' ନଇ ବାଲଏ ବାଲଏ ଯାଇ ଆରପାଖ ବନ୍ଧର ସେ ଯୋଉ ବଡ଼ ଝଙ୍କାଳିଆ ବରଗଛ—କୋଉକାଳୁ ଚକାମାଲି ପକେଇ, ଜଟ ଓହଳେଇ, ଚକଡ଼ାଏ ଜାଗା ମାଡ଼ିବଇଚ, ତା'ର ମୂଳେ ଉଠିଲେ ଖାଲି ଆଖିକ ଦାଶେ ବୁଦୁବୁଦିକଆ ଜଙ୍ଗଲ, ଡଇଲା ଜମି, ଗ୍ଲେଟ ଗ୍ଲେଟ ମୁଣ୍ଡିଆ, ଆଉ ବିସ୍ତୀର୍ଣ୍ଣ ବେଣା ପାଟର ବ୍ୟାପ୍ତି । ତା'ର ଭିତରେ କାଁ ଭାଁ କୋଉଠି କେମିତି ଖଣ୍ଡେ ଅଧେ ଅଛି ସଅର ସାଇ !

ସେଇ ବରମୂଳୁ ବାଁ ହାତ ଭାଙ୍ଗିଗଲେ ପଡ଼ିବ ନୂଆପାଟଣା ଡାକବଙ୍ଗଳା । ତା'ର କଡ଼ରୁ ପୁରୁଣା କଟକ-ସମଲପୁର ରାସ୍ତା ଭାଙ୍ଗିଯାଇଚ ଉତ୍ତର ମୁହାଁ ହେଇ । ନଈବନ୍ଧରୁ ଟିକେ ଗୁଡ଼ ବେଣା-ପାଟ ଭିତରେ ଶଗଡ଼ଗୁଳା ଦ'ଟା ଲମ୍ବି ଯାଇଚ—ରାଧାଶ୍ୟାମ ପୁର, ଶପନପୁର, ତଣ୍ଡିଖାଲ, ବାନ୍ଧଝୁଧୁଡୁଣ୍ଡା ଗାଁ କରଦେଇ

ଆଗକୁ । ସିଏ ପୁଣି ଏମିତିଆ ବାଟ ଯେ, ସକାଳୁ ନୂଆଡାଙ୍ଗଶାଠୁଁ ଶଗଡ଼ ଖଣ୍ଡେ ବାହାରିଲେ ଗୁଇନୋଉଠା ବେଳ ସରିକ ଯାଇ ପହଞ୍ଚିବ ବାନ୍ଧଘୁଷୁରୀରେ ।

'ଶୁଆଖାଇ' ବନ୍ଧ ଉପରେ ସାପେଇ ସାପେଇ ଲମ୍ବି ଯାଇଛି ମଣିଷ ଚଲନ୍ତ ଉଗରୀ ବାଟଟାଏ । ମଝିରେ ମଝିରେ ନଈପାଣି ଫିଟେଇ ଦେଇଚ ଗୋଟାଏ ଲେଖେଁ ସପେଇ ।

ଚତୁର୍ମାସ୍ୟାରେ ଗୃହିଆଡ଼େ ଅକାତକାତ ପାଣି ।

* * *

ଏ ଚଉହଦରେ ବାନ୍ଧଘୁଷୁରୀ ବଡ଼ଗାଁ······

ଠିକ୍ 'ଶୁଆଖାଇ' ଅତଡ଼ା ଉପରେ ପାଁ'ଶ ଘରବସ୍ତି । ଗାଁ ଲୋକେ ସମସ୍ତେ ଖଟିଖିଆ—ମୂଲିଆ ଶ୍ରେଣୀର । ନଇଞ୍ଚ ରକତକୁ ପାଣି ନ କଲେ ଭୁଣ୍ଡକୁ ହାତ ଯାଏନ । ଘରଟିମାନ ଠିକ୍ ପାଗ ଖୋପ ପରି । କାହା ଗୃହଳରୁ ଛଣ ଉଡ଼ଯାଇଚତ, କାହା କାନ୍ଥ ଧସି ପଡ଼ ସନ୍ତେଇଚ ! କେଳା କୁଡ଼ିଆଠ ଦେଲେ ଆହୁରି କ ସୁନ୍ଦର !

ଗାଁ ଦାଣ୍ଡ ଅପରିଷ୍କାର-ଅପରିଚ୍ଛନ୍ନ—ଗୋବର, ଅଳିଆ, କୁଟା-କାଠିରେ ଭର୍ତ୍ତି । ରାତି ପାହି ସକାଳ ହେଲେ ଗାଁ ଦାଣ୍ଡରେ ଲୋମହାନ କୁତା-କୁଣ୍ଡିଙ୍କ ସହିତ ଲଙ୍ଗଳା ଛୁଆଙ୍କ ଆସର—ମୁହଁରେ ଅଶ୍ଳୀଳ ଭାଷା ବସା ବାନ୍ଧିଛି ଆଜନ୍ମରୁ । କାହାର ପିଳେହି ବଢ଼ି ପେଟ ଠୁମ୍‌କେଇଚ ଠେକ ପରି—ଗାଧୁଆ ତୁଠ ପଥରରେ ଶିଉଳି ବସିଲା ପରି ଦେହରେ ବଇଚ ମଳ—ପିଠିରେ ମଇଁଷିଆ ଜାବୁର ଏକଚ୍ଛତ୍ର ଆଧିପତ୍ୟ । କାହା ନାକରୁ ଗାଢ଼ ହଳଦ ବର୍ଣ୍ଣର ସିଂଗାଣୀ ବୋହି ପାଟିରେ ପଶୁଚ—ସିଏ ତାକୁ ଶୋଷି ନଉଚ ପେଟ ଭିତରକୁ ।

ହେଲେ ବ, ଏଇମାନେ ଆମ ନେତାଙ୍କ ଭାଷାରେ, "ଆଗାମୀ ଯୁଗର ଭାବୀ ନାଗରିକ ।"

× × ×

ଏସାଲେ ନଈ ଧାର ଅଛି ଏପାଖରେ·········

ଆରସାଲେ ସେପାଖରେ ଥିଲା । ଯୋଉସାଲେ ଧାର ସେ ପାଖରେ ଥାଏ, ପାଣି ଟୋପାଏ ପାଇଁ ଲୋକଙ୍କର ଦୁରବସ୍ଥା କହିଲେ ନ ସରେ ! ଗାଁର ପୂର୍ବ ମୁଣ୍ଡରେ ଥିବା କୋଉ ମାନ୍ଧାତା ଅମଳର ଅତଡ଼ାଖସା କୂଅ—ଯାହା ଦିହରେ ଏବକୁ ଉଠିଛି ଗ୍ରେଷ୍ଠ ଗ୍ରେଷ୍ଠ ବର ଆଉ ଓସ୍ତ ଗଛ, ସେଇଠୁ ଲୋକେ ପାଣି ଖା'ନ୍ତି । ଦ୍ୱିତୀୟ ସନ କୁଆଡ଼େ ଖଣ୍ଡେ କୂଅ ପାଇଁ ସରକାରରୁ ଟଙ୍କା ମଞ୍ଜୁର ହୋଇଥିଲା । ସେ ଟଙ୍କାକୁ ଗାଁର ନାମଜାଦା ଟାଉଟର ଭଗି ଯେନା ବାଟ ମାରଣା କରି ଖାଇଗଲା ବୋଲି ଲୋକେ କହନ୍ତି ।

ଗାଁର ସବା ସେମୁଣ୍ଡକୁ କେଉଁ ଏକ ପ୍ରାଗୈତିହାସିକ ଯୁଗର ମଶାଣି ! କନା, କତରା, ହାଣ୍ଡି, ମାଠିଆ, ମଣିଷମୁଣ୍ଡ, କୋକେଇ ବାଉଁଶ, ଲାଇଶିତଳା ଅଙ୍ଗାର ସବୁ ଛତରେଇ ହୋଇ ପଡ଼ିଛି କୋଉ କାଳରୁ !! ଦିଶୁଛି, କମ୍ଭୁତ ।

ନଅଙ୍କିଆସାଇ କଣା ଯେନା ଘର କଡରେ ଗାଁର 'କୋଠଘର ।' ଛୁଣ୍ଡା ହେଁସରୁ ଦି'ତିନିଟା ଗୁରିଆ ହୋଇ ଆଉଜା ହୋଇଚି ଗୋଟାଏ କଣକୁ । ଠିକ୍ ତା'ର ବଟଖିଡ ଦିଗରେ ଖଣ୍ଡେ ଖଟୁଲି ଉପରେ ଅତି ଯତ୍ନର ସହିତ ରଖାଯାଇଛି କେତେଖଣ୍ଡ ପୁରୁଣା ତାଳପତ୍ର ପୋଥି । ଝାଟିମାଟି କାନ୍ଥ—ବାଉଁଶ ଖିଲ ମରି ଓହଳଚି ଭଂଗା ମୃଦଂଗ କେଇଟା !! କାନ୍ଥ କରକୁ ଲଗି ଚୁଲିଟିଏ, ଦୁଇଟି ଆଟିକା—ମାଠିଆଟିଏ ଉବୁରା ହୋଇଚି । କେବେ କେହି ବାବାଜି, ବୈଷ୍ଣବ ଆସିଥିଲେ, ସେଇଠି ମୁଠାଏ ଫୁଟାନ୍ତି ।

ଦିନ ଶେଷରେ କର୍ମକ୍ଳାନ୍ତ ବାସିନ୍ଦାଙ୍କ ଆସର ଜମେ ସେଇ କୋଠା ଘରେ । ଖୁମ ଖେଳ ଭଜନ—ଭାଗବତରୁ ଅଧା-ଦିଅଧା ବୋଲିହୁଏ ନାଇତ । ଯେତେବେଳେ ରାତ୍ରିର ଅନ୍ଧକାର ଘନେଇ ଆସେ—ନଈ ସେପାରିରୁ ଶୁଭେ ଝିଙ୍କି ଝିଙ୍କି ଭିତର ଘନ ଘନ ଡାକ, ଠିକ୍ ସେତିକିବେଳେ ସମସ୍ତେ ଫେରି ଚାଲନ୍ତି ନିଜ ନିଜ କୁଡ଼ିଆଟି-ମାନଙ୍କୁ । ଅଲଣା, ଦରସିଝା ଯାହା ଥାଏ, ମୁଠାଏ ଖାଇ ନିଜକୁ ଢାଳି ଦିଅନ୍ତି ବିଶ୍ରାବଶୀର ଧୂମନ୍ତ ବୁକୁରେ—ଏଇୟା ହିଁ ସେମାନଙ୍କର ଜୀବନ ! ଆଡ଼ମ୍ବର, ପରିପାଟୀବିହୀନ ତାର ପ୍ରବାହ—ପଙ୍କିଳ ତା'ର ସ୍ରୋତ । "ସଭ୍ୟତାର" ବେଳାଭୂମିରେ ନିରୀହ କୃଷ୍ଣସାର ଦଳ ସେମାନେ । "ଆକାଶ ବାଣୀ"ର ମନମତାଣିଆ ମୂର୍ଚ୍ଛନା—ସୌନ୍ଦର୍ଯ୍ୟର କଳାବଜାରଠାରୁ ସେମାନେ ଦୂରରେ···ବହୁ ଦୂରରେ । ସେଠି ନାହିଁ ସହରର ବ୍ୟାଧିଗ୍ରସ୍ତ ବାତାବରଣ—"ଶୃଙ୍ଖଳା" ନାଁରେ ନାଇଁ ଜାଲିଆତି ! ଅଛି କେବଳ, ଦିବାବସାନରେ କ୍ଷେତ ବାହୁଡ଼ା ଗୃହସ୍ଥର ପିକାଧୂଆଁ—ଆବିଳତାହୀନ ଉଚ୍ଛ୍ୱାସ—ଜନ୍ମମାଟି ପ୍ରତି ଅକପଟ ମମତା ।

ରୋଗ-ବାଧକା ହେଲେ 'ଡାକ୍ତର' କମିତିଆ ପଦାର୍ଥ କେହି ଜାଣନ୍ତିନି । ଔଷଧ ଖା'ନ୍ତି ତର୍ଣ୍ଣି ଖାଲି ଗାଁର ନପଟ ବଇଦ ମଦନା ପାଖ କତିରୁ । ମଦନା ବିଚାରି ବେଶ୍ ଦି'ପଇସା କମାଏ !! ଦୋକାନରୁ ଆଠଣା-ଟଙ୍କାକର ବାଇସୋଡ଼ା କିଣିଆଣି, ତାକୁ ଗୋଟିଏ ଲେଖେଁ ପୁଡ଼ିଆ କରି, ପୁଡ଼ିଆକ ଦିଅଣା ଦରରେ ବିକେ ମଦନା ! ଲୋକେ ବି ସେଇଥିରେ ଭଲ ହୋଇ ଯା'ନ୍ତି—ବିଶ୍ୱାସ ।

× × × ×

ଛକଡ଼ି ପଧାନେ ବାନ୍ଧୁଷ୍ଣୁଣ୍ଣା ଗାଁର ଟିକେ ଥେଇବାଲ ଲୋକ । ଜମି ବାଟିଏ ଅଛି—ବରଷକ ଭାତଚିନ୍ତା ନ ଥାଏ । ମୁହଁ-ଯାକ ବସନ୍ତ ଚିହ୍ନ—କଳା କଟି କଟି ପାଞ୍ଚହାତ ମର୍ଦ୍ଦ ପଧାନେ । ଗାଁ'ର ମୁରବୀ ଆଉ ମଧ ଭାରୀ ମଉଜିଆ ଲୋକ ସେ । ତାଙ୍କ କଥା ଶୁଣିଲେ ନ ହସିବା ଲୋକ ବି ଟିକେ ହସି ଦିଏ ! ପଧାନଙ୍କର ପୁଅ ନାହିଁ ମୋଟରୁ—ଦି'ଝିଅ । ବଡ଼ ଝିଅ ତଦେସ୍ତା ସନ ବାହା ହୋଇଚି ନରଣପୁର ଗନ୍ଧଆ ଗୋଛେଇତ ଘରେ । ସାନ ଝିଅ ବର୍ଷେ ହେଲା ଜ୍ଞାନ ପାଇ ଘରେ ଅଛି । ତାକୁ କୋଉଠି ଭଲ ଜାଗା ଦେଖି ଉଠେଇ ଦେଲେ, ପଧାନଙ୍କ ମୁଣ୍ଡରୁ ଚିନ୍ତା ଯିବ । ସେ ଆଖି ବୁଲେଉଚନ୍ତି ହିଦ୍ଦର୍ମ । ହେଲେ, ଏଯାଏଁ କୋଉଠି ଭଲ ଜାଗା ଯୁଟିନାହିଁ !!

ଗୁଇ ନୋଉଡ଼ା ବେଳ······

ମୁଣ୍ଡରେ ଠେକା, ମୁହଁରେ ପିକା, କାଖତଳେ ବଡ଼ାଏ ଅଖା, ପାଦରେ ହଳେ ମଟର ଟାୟାର ଦିଆ ଚଟି । ଛକଡ଼ି ପଧାନେ ଅତି ସନ୍ତର୍ପଣରେ ନୂଆପାଟଣା ଡାକବଙ୍ଗଳାଠୁଁ ଗଡ଼ିଲେ ଶୁଆଖାଇ ବନ୍ଧକୁ । ପଧାନେ ସକାଳୁ ଅଧିଆ ମୁହଁରେ ଝିଅ ଘଟିକ ଯାଇ-ଥିଲେ । ଗୃହିଦ୍ଧନେ ଥରେ ନସ ନାଗୁଆ କରି ଯିବା ଆସିବା କରନ୍ତି ଝିଅ ଘରକୁ । ଗତ ଥର ସେ ଝିଅକୁ ଅଖାଟା ଦେଇ ଆସିଥିଲେ ବଳଦଙ୍କ ପାଇଁ କୁଣ୍ଡା ମୁଠାଏ ଦବାକୁ । ହେଲେ, କୁଣ୍ଡା ଏଥର ହେଲା ନାହିଁ । ଖାଲି ଅଖାଟାକୁ ଯତ୍ନର ସହିତ କାଖତଳେ ଜାକି ପଧାନେ ଧପାଳିଚନ୍ତି ।

ଆଗରେ ଓଗାଳପୁର ପାଣସାଇ······

ସାଇମୁଣ୍ଡ ନଈ ଅଡ଼ତା କାନ୍ଥିକୁ ଉହୁଙ୍କି ଆସିଛି ଏକ ପ୍ରକାଣ୍ଡ ଆମ୍ବ ଗଛର ସବୁଜ ଶାଖା-ପ୍ରଶାଖା ।

"ଏ ସାଲେ ଏ ଗଛଟା ଥାକଗଲା ! ଆଉ ଦ'ଟା ଦିନ ବଡ଼ିପାଣି ରହିଥେଲେ, ଯାଇଥା'ନ୍ତା ଏକା ଥରକେ !!" ମନେ ମନେ ଏତକ କହି ପଧାନେ ଟିକେ ବସି ପଡ଼ଲେ ସେହି ଆମ୍ବମୂଳ୍ଲ ମଣିଷ ଚଳନ୍ତିବାଟ ଉପରକୁ ଅଜଗର ପରି ଲମ୍ବି ଆସିଥିବା ସିଅ ଉପରେ ।

ପଶ୍ଚିମ ଦିଗନ୍ତରେ ଗତାୟୁ ସୂର୍ଯ୍ୟ ନାଲି ରେଷଣୀ ଜାଲ ଅପସରି ଯାଉଚ ଆସ୍ତେ···ଖୁବ୍ ଆସ୍ତେ । ଦିନଯାକର ରୌଦ୍ରତାପର ରୁକ୍ଷତା ହ୍ରାସ ପାଇଛୁ ।

"ଓଃଃଃ···" ବସିବସିକା ଗୋଟାଏ ଦୀର୍ଘ ନିଶ୍ୱାସ ପକେଇଲେ ପଧାନେ ।

ଓଗାଲପୁର ସାଇମୁଣ୍ଡ ନଇଭୁଠରେ ପଞ୍ଚାଏ ପାଲୁଣୀ ଓପର-ଓଳର ନିତ୍ୟକର୍ମ ସାରବାରେ ଲାଗିଛନ୍ତି । ତା'ର ଭିତରେ ସେମାନଙ୍କର ଗୁଲଛୁ ନାନା ରକମର ଗପ । ଗାଁମାନଙ୍କରେ ସମାନ ବୟସର ଟୋକା ପଞ୍ଚାଏ ଯୁଟିଗଲେ ଯିମିତି ବାର ଆଉର ଗୁଲଖଟି ଗପ ପଡ଼େ, ସେଇମିତି ଗପ ମାଇପେ ପକାନ୍ତି ଗାଧୁଆ ଭୁଠରେ—ଝାଡ଼ାଫେରା ଠେଇଁ ।

ଗପ ଗୁଲଚ ତ ଗୁଲଚ !

ତାଙ୍କର ଭିତରୁ ମାଇପିଟିଏ କାହାକୁ ପଗ୍ଚରଲା, "ହଇଲୋ ନାଣି ! ତମ ଘଅଟିକ କାଲି କଏ ଆଇଥେଲେ କ ?"

ନାଣିଟି ତା' ନିଜ ଭାଷାରେ ଉତ୍ତର ଦେଲା, "ମ ଜଇଁ !"

"କଏ ?···ଗେହ୍ଲେଇ ବର ??"

"ହଁ ।"

"ନାଣି ଲୋ ! ମୁଁ ତାଙ୍କୁ ଜମାରୁ ଦେଖିନାଇଁ !!"

"ନା, ଜମା ଦେଖିଥବୁ କ ! ଜାଣି ଚଲୁଥା ନା······"

"ଆଖି ଛୁଇଁଁବଲେ ନାମ ! ଜମା ଦେଖିନାଇଁ ।"

"ହେନେ କଅଣ ହେନା, ମ ଗେହ୍ଲା କରମ ତେଜ୍" ଭୁଠ ଚଥର୍‌ରେ ଗୋଡ଼ ଗୋଇଠିକୁ ଘଷି ମଳ ଛଡ଼ଉ ଛଡ଼ଉ ନାମିଟି କହ୍ଲ, "ଜଇଁ ମଅର ଦ'ଅଷର ପଡ଼ିଚ । କାଆଲ ପର୍ଥମେ ଆସୁ ଆସୁ ଆଗ ସିନ୍ଧୁକ ଉପରୁ ଭଗତ (ଭାଗବତ) ଠାକୁ ନେଇ ପିଣ୍ଡାରେ ବସି ବୋଲଲ୍ଚ ବୋଲିଲ୍ ଯେ···ସମେତେ ନ କାମା ( କାବା ) ହେଇ ଅଚନେଇଁସିନ୍ତ ଆ-ଉ··· । ନୁଅଁଲେ ଉଜଳ ?"

"ତୁ ଯାଆଚଲ !" ଉଜଳ ନାମ୍ନି ମାଇପିଟି ମୁହଁ ମୋଡ଼ ଦେଇ କହ୍ଲ, "ମ' ମନତ ପୋଢ଼ ଜଳ ଯାଉଚ ଆ······ !!"

"କା—ଇଁ—କ—ମ—ଅଁ···ଅଁ···ଅଁ··· ?"

"କାହ୍ଲହୁଁ ତା' ବୁପାକୁ ଜର···ହେ ମା' ଗରବେଶରୀ !··· ତ ଇଚ୍ଛା !!! ସିଏ କ'ଣ ଖାଲ ମ' ଘଇତା···ତ ଘଇତା ନୁଅଁ ??"

ପଧାନେ ସେଇ ଆମ୍ବଗଛ ମୂଳେ ବସି ଆଗ ହସିଲେ-ଭେଲ୍ବଏ—ତା'ପରେ ଉଠି ଠିଆ ହୋଇ ଅସ୍ପଷ୍ଟ ଭାବରେ କହ୍ଲେ, "ହଁ ବେ ! ତମ ଘଇତା ଗରବେଶ୍ବରୀଙ୍କ ଘଇତା ନୁଅଁ ଆଉ କ'ଣ !! ହ୍ୟାବ ଯୁଗ ତମ ଭାଉ ବଢ଼େଇ ଦେଲ୍ । ନଇଲେ·····"

"ହୋ ଭଇ !···"କାହା ଡାକରେ ଚମକ ପଡ଼ଲେ ପଧାନେ । ଲୋକଟିଏ ଗୁଲପାଉଥେଲ୍—ପଚ୍ଚରଲ୍, "ମଣିଅଁ କେତେ ବାଠ ପଡ଼ବ ଆଉ ?"

ପଧାନେ କହ୍ଲେ, "ହଃ, ବାଠ ଦ'ପା ହବ ।"

"ଗଲେ···ବେଳ ପାଇବଟି ?

"ଏ ହେଇତନ ଗଳପଡ଼ବ ଅଇଛା !"

ଲୋକଟି ଗୁଲଗଲ୍·····

ପଧାନେ ବ ଗୁଳଲେ ଘରମୁହାଁ ହେଇ । ଓଃ, ତାଙ୍କ ଦାନ୍ତ କାହିଁ ଆଜି ଗୂଳେଇ ହଉଚି ଘ'ର । ଗଲେ, ଆଗ ରତମା ବୋଉକୁ କହିବେ, ଗଣ୍ଡାଏ କଅଣ ଖାଜଦବ···ସେ ଆଗ ଚୋବେଇବେ ବସି ଖେରାଏ ।

ପଧାନେ ଧପାଳିଚନ୍ତି ।······

ବାନ୍ଝ୍ଦୁଷୁଖି ହେଇଛି ଆଗେଗରେ !

ଡେବରିହାଡି ଦଣ୍ଡାରେ ଗୋରୁ, ଛେଳି, ମେଣ୍ଢା ମିଶି ଚରୁଚନ୍ତି ପଲେ । ଗାଈଆଳ ଟୋକା ଦ୍ୱାପରର ଶ୍ରୀକୃଷ୍ଣ ସାଜି, ପିଠିରେ ପାଞ୍ଚଣ ଡିଆଦେଇ, ଗୋଡ଼ରେ ଗୋଡ଼ ଛନ୍ଦି ଠିଆ ହେଇ ସୁର୍ ମେଲେଇଚି—

''ବାଉଁଶ ପତର ସ··· ଅ···ଅ···ରୁ···ଉ···ଉ···
ତଳେ ନେଇଯିବ ସମଲ ପୁରୁ—
ସମଲ ପୁ ରୁ ଲୋ···
ଧାନ କଟାକଟି ସ···ଅ···ଅ···ରୁ···''

ପଧାନେ ମୁଣ୍ଡଟେକ ଅନେଇଲେ, ''କିଏ ବେ ? ଆରେ ଏ ଶୁକୁଟା ସଅର ପୁଅଟି ତୁ ?? ହଁ, ହଁ, ଗୁଲୁ··ଚାଲୁ !!···''

ଗୀତ ଧାଏଁ କନ ବନ୍ଦ ହେଇଗଲା······

ପଧାନେ ଗଡ଼ଲେ ଗାଁ ଭିତରକୁ ।

× × ×

ରାତି ଘଡ଼ିଏ ···

ଛକଡ଼ି ପଧାନେ ଅଗ୍ନିରେ ଗଣ୍ଡାଏ ଗୁଉଲ ଭଜା ପୁରେଇ, ବାଁ ହାତଚକରେ ଦି'ଟା ଲୁଣି ଲଙ୍କା ଧରି, ସଜିଲକରି ଚୋବଉଚନ୍ତି ବସି । କଟିକଟିଆ ଅନ୍ଧାର — ମୁହଁକୁ ମୁହଁ ଦିଶୁନାହିଁ ।

ଗୁଡ଼ୁଲ ଭଜା ଚୋବେଇବା ଶବ୍ଦରେ ଗୋଟାଏ ସିଲପଟ୍ କୁତ୍ତା—ଯାହା ବିଷୟରେ ମୋଟ୍ଟୁ ରୁ ତୁମ ନାହିଁ—ଏକଦମ୍ ସଫା—ଛୁଣ୍ଡା ମଟର୍‌ଷ୍ଟାପୁର୍ ଘର ବିଷ, ସିଏ କେତେବେଳେ ଆସି ଟାକ ବଇଠ ସିଣ୍ଡାତଳେ, ପଧାନଙ୍କୁ ସେକଥା ମୋଟୁରୁ ମାଲୁମ୍ ନାହିଁ !! ତାଙ୍କର ଗୋଟାଏ କ ଗଣି କେଜାଣି, ସେ ଆଜନ୍ମରୁ କୁକୁରଙ୍କ ନାଁ ଶୁଣିଲେ ଡରାଅନ୍ତ ।

ଗୋଟାଏ କ'ଣ ଗନ୍ଧ ହେଲା ......

ପଧାନେ ସେଇଠି ବସି ପାଟି କଲେ, "ହଇ ଲୋ ! ଶୁଣୁଛ ?"

ରତନାବୋଉ ମଝିଦୁଆରେ ଶିଳ ମୁଣ୍ଡରେ ଡବ ଥୋଇ ବେସର ବାଟୁଥିଲେ । ପଧାନେ ପୁଣି କହିଲେ, "ହଇ ଲୋ ! ଶୁଣୁଛନ୍ତି ?"

"କଅଣ ମ !!"

"ଆଲୋଲୋ ଆଲୁଅଟା ! ଗୋଟାଏ କ'ଣ ଗନ୍ଧେଇଲା ଏଠି !"

ଲୁଗାକାନି ଆଡ଼ୁଆଳ କରି ରତନାବୋଉ ଡ଼ବ ଧରି ଆସି ପହଞ୍ଚିଲେ ! କୁତ୍ତା ବର୍କୁଷ୍ଟା ତ ସେତିକିବେଳକୁ ବଇଠ ଏକାଳାପୁରେ ! ପଧାନଙ୍କ ଆଖି ସିମିତି ପଡ଼ିଚ ତା' ଉପରେ ସେ ଆକୁଳିଆ ହୋଇ ପାଟିକଲେ, "ଆରେ ହେ, ଦେଖିବଟି ହୋ !! ଆଣ ମ ବାଡ଼ିଟା ବୋଲୁଅ !" ଏତିକ କହିସାରି ପଧାନେ ଉଠୁଉଠୁ ତାଙ୍କ ଅଣ୍ଟିରୁ ଗୁଡ଼ୁଲଭଜାତକ ବାଞ୍ଛିଗଲା ତଳେ ।

କୁତ୍ତା ବର୍କୁଷ୍ଟା ଦେ ମାର୍ ଛୁ —।

ପଧାନେ ରତନା ବୋଉ ଉପରେ ପାଟିକଲେ; "ତୁ ଗୋଟାଏ ମଣିଷ ନା କ'ଣ ?"

"ମଲା, ମୁଁ କ'ଣ କଲି କ ?"

ପଧାନେ ହସି ଦେଲେ ଫେଁ କନ, "ନାଇଁମ ! ଯୋଉ ଗଣ୍ଡାକଦେଇଥେଲୁ···ସିଏତ ଗଲା !! ଆଉ ଗଣ୍ଡାଏ ଦେ !!"

"ମୁଁ ଅଇଜ୍ଜା ଆଉ ଭାଜ ପାରବ ନାଇଁ ।"

"ହଉ ଯାଃ ।"

ରତମା ବୋଉ କ'ଣ କହୁ ଆସୁଥିଲେ—ଭକାଗୁଆ କହ୍ଲାରସ୍ଥଅ ନଧିଆ ଆସିଲାରୁ ସେ ଗୃଲଗଲେ ।

"କଓ ନଧି !" ପଧାନେ ପଚାରଲେ, "କୁଆଡେ ମାଡ଼ଆଇଲ ଏ ଅନ୍ଧାରଟାରେ ?"

ଗୋଟାଏ ଗୋଡ ତଳେ, ଗୋଟାଏ ଗୋଡ ପାହାଚ ଉପରେ ଥୋଇ, ଆଙ୍ଗୁଠି ସନ୍ଧରୁ ଦ'ଟା କୁଣ୍ଡିଆ ଚପି ନଧିଆ କହିଲା, "ଜଣେ କଏ କର୍ମୀ ଆଇଚନ···ସମେତେ କୋଠଘରେ ବଇଚନ ଆଉ ତମ୍ଭୁ ଡକେଇଚନ ।"

"ହଉ, ତୁ ଗୃଲ୍, ମୁଁ ଯାଉଚ ।"

ନଧିଆ ଗୃଲିଗଲା······

ପଧାନେ ଉଠି ଗୃଲ ଦଉଣ୍ଡିଲେ । ଦାନ୍ତରୁ ଖଣ୍ଡେ ଖଣ୍ଡିଆ ପିକା ସେ ଖୋସି ଥେଲେ ଗୃଲରେ । ବହୁ ଖୋଜା ଖୋଜ ପରେ ପିକାଟି ପାଇ, ଖଞ୍ଜାକୁ ଯାଇ, ଡବରେ ନିଆଁ ଧରଉ ଧରଉ ରତମା ବୋଉ ପଗୃରଲେ, "କୁଆଡ଼େ ଯାଉଚ କ ?"

"ଏଇ କୋଠ ଘରୁକୁ ।"

"ରନ୍ଧା ସଇଲାଣି ପରା !"

"ହଃ, ଏତକ ବେଳକୁ ଖାଇବ ।" କଲେ ଧୂଆଁ ଗୁଡ଼ ବାହାର ଗଲେ ପଧାନେ ।

  

କୋଠ ଘରେ ବୁଢ଼ା-ଢେଣ୍ଡିଆ ହୋଇ ବସିଛନ୍ତି ଆଠ ଦଶ ଜଣ—କର୍ମୀ ବସିଚନ୍ତି ମଝିରେ । ରୁଖା ଉପରେ ଜଡ଼ାତେଲର ଘିପ ଜଳୁଚ ।

କର୍ମୀଟି ଯୁବକ ।···

ପହରଣ, ସରୁ ଖଦଡ଼ ଧୋତି ଆଉ ଚଦର । କାନ୍ଧରୁ ଅଣ୍ଟା ପର୍ଯ୍ୟନ୍ତ ଓହଳଚ ମୋଟା ଖଦଡ଼କନାର ଏକ ଥଳି । ପଅରଦିନ କୁଆଡ଼େ ସହରରୁ ଜଣେ କଏ ବଡ଼ ନେତା ଆସିବେ ଯେ··· ମଉଗଜପୁରରେ ସଭା ହବ ! ସିଏ ଗାଁ ଗାଁ ବୁଲି ପ୍ରଚାର କରିବାକୁ ଆସିଚନ୍ତି ।

"କ'ଣ ?" ଘର୍ଦ୍ଦ ମାରିବଟାକୁ ଠୋକର ଦେଇ ବସିଥିବା ଲୋକଙ୍କୁ ପ୍ରଶ୍ନକଲେ କର୍ମୀ, "ସେଦିନ ସବୁ ଯିବଟି ସଭାକୁ ?"

ବୁଢାଟିଏ—ଅଣ୍ଟା ନଇଁ ଗଲଣି—କହିଲା, "ହଁ, ବାବୁ ! ସଭାରୁ ଆମକୁ କ'ଣ ମିଳିବ !! ଆଜ କାଲିତ ତେଲିଆ ମୁଣ୍ଡରେ ତେଲ, ଲୁଖିଆଙ୍କୁ ପଚରେ କଏ ?"

କର୍ମୀ ପଚାରିଲେ, "ସେଥିପାଇଁ ତା ହେଲେ ବାଟ କ'ଣ ?"

"ବାଟ ଆଉ କ'ଣ ? ଆମ କଷଣ ଧନବନ୍ତ ସିଏ କରୁଚ ସିଏ ବୁଝିବ । ବେଟ୍‌ଚ ( ବ୍ରିଟିଶ୍ ) ଅମଳେରେ ଆମେ ଖୁବ୍ ସୁଖରେ ଥେଲୁ । ଅବକାତ ପେଟକୁ ଦାନା ମିଳୁ ନାଇଁ !"

"ମଉସା !" କର୍ମୀ ବକ୍ତୃତା ଆରମ୍ଭକଲେ ବସିବସିକା, "ଆମ ଦେଶ ମୋଟେ ଆଠବର୍ଷ ହେଲା ସ୍ୱାଧୀନ ହେଲା, ସରକାର ଆମର ଆଠବର୍ଷର ଛୁଆ—ନାଁ ବାଳକ । ତାକୁ ସିନା ବଡ଼େଇ କୁଡ଼େଇ ମଣିଷ କଲେ ସିଏ ଆମକଥା ବୁଝିବ ନା କମିତ ??"

ଛକଡ଼ ପଧାନେ କାନ୍ଥକୁ ଆଉଜି ଚନ୍ତାଶୀଳ ଦାର୍ଶନିକଙ୍କ ପରି ଗୁମ୍‌ମାରି ବସିଥାନ୍ତି । କର୍ମୀ ପୁଣି କହିଲେ, "କ'ଣ ପଧାନ ବାବୁ ? କହୁନ କାହିଁକି !!"

ଏଥର ପଧାନଙ୍କ ମୁହଁ ଫିଟିଲା ।

ସେ ସିଧା ହୋଇ ବସି କହିଲେ, "ହଁ, ତା' ଠିକ୍ ! ହେଲେ··· ଆପଣ ଅଇଛା କହିଲ ସରକାର ଆମର ଆଠବର୍ଷର ଛୁଆ—ନାବାଳକ, ତାକୁ ବଢ଼େଇ କୁଢେଇ ମଣିଷ କଲେ ସିଏ ଆମକଥା ବୁଝିବ, ଏୟା ନା ?"

"ହଁ, ହଁ···" କର୍ମୀ ମୁଣ୍ଡହଲେଇ ସମ୍ମତି ଜଣେଇଲେ ।

"ସର୍କାର ଯଦି ଆଠ ବରଷର ଛୁଆ······" ପୁଣି କହିଲେ ପଧାନେ, " ତା'ର ନାବାଳକ ନ କଟୁଣୁ ପୃଥ୍ୱୀକତ ଆସି ସନ୍ଧୁକ ସାଇଲାଣି ! କର ଉପରେ କର ବସଉଛି···ହେଇଛି ! ସେଦିନ ଜଣେ କିଏ କହିଲା, କୁଆଡ଼େ ଖବର କାଗଜରେ ଲେଖା ହେଇଛି ବମ୍ବେଇରେ କୁଆଡ଼େ ଗୁଳି ଚଳିଲା ଯେ, ଆଠଜଣ ଇସ୍କୁଲିଆ ପିଲା ମଲେ । ଯେବେ ଆଠ ବରଷର ଛୁଆ ହେଉ ନପାଉଣୁ ମଣିଷ ମାଇଲାଣି···ହେଉ ପାଇଲେ ସିଏ ଆଉ ଏ ପୃଥ୍ୱୀକି ରଖିବ ?"

କର୍ମୀ ଆଉ କିଛୁ କହି ପାରିଲେ ନାହିଁ···

କେବଳ ଦି'ଥର ଛେପ ଢୋକିଲେ ।

ଇତି ମଧ୍ୟରେ ଟାଉଟର ଭଗିଜେନା ହାତରେ ଖଣ୍ଡେ ଖବର କାଗଜ ଧରି ପଶିଆସିଲା ଭିତରକୁ । ପଧାନେ କହିଲେ, "ଭଗିଆ

ଘଇ ! ସିଏ କଅଣ ଖବର କାଗଜ କ'ରେ ? କଅଣ ସବୁ ନୂଆ ବାତନ ଅଛୁ, ଟିକେ ପଢ଼ିଲୁ !!"

ଭଗିଜେନା ଚକାମାଲ ପକେଇ ବସିଲା···

ଖବର କାଗଜର ପ୍ରଥମ ପୃଷ୍ଠାରେ ଥିବା ଗୋଟିଏ ଶିରୋ-ନାମାକୁ ପଢ଼ିଲା ବଡ଼ପାଟିରେ, "ସମାଜବାଦ ହିଁ ଏକମାତ୍ର ମୁକ୍ତିର ପଥ । ପୁନାଠାରେ ଆଚାର୍ଯ୍ୟ କୃପାଳନୀଙ୍କ ମତ ପ୍ରକାଶ ।

ପୁନା, ତା୧୨।୯

ଗତକାଲ ଗଣେଶଖିଣ୍ଡିଠାରେ·····"

"ଆଚ୍ଛାହେ ଭଗିଆ ଘଇ !···" ମଝିରେ ପଧାନେ ପଚାରି ଉଠିଲେ "ଏ କୃପାଳୁଣୀ ମର୍ଦ୍ଦ ନା ମାଇକିନିଆଁ ?"
କର୍ମୀ ଠୋ' ଠୋ' ହସିଲେ·····

ଭଗିଜେନା ମୁରୁକିହସାମାରି କହିଲା, "ତୁ କ'ଣ ଭାବୁଚୁ ?"

"ମାଇକିନିଆଁ ।"
"କେମିତି ?"

"କରେ କେମିତି କଅଣ । ନାଁରୁ ମଣିଷ ବାରିପାରୁନୁ ? ଯେମିତି ବାଉରୁଣୀ, ପାଲୁଣୀ ତାନ୍ତୁଣୀ, ଚମାରୁଣୀ, ନାହାକାଣୀ ଗୋପାଳୁଣୀ, ସେଇମିତି କୃପାଳୁଣୀ ।"

× × × ×

"ମଉସା !" ଦାଣ୍ଡରେ ଠିଆ ହେଇ ଧରମା ଭଣ୍ଡାରି ଡକିଲା । ପଧାନେ ଜବାବ ଦେଲେ, "କଅଣ ?"

"ମାଉସୀ ଡାକୁଚ ଖାଇବ ଯାଅ ।"

"ଯାଉଚ ।" ଉଠୁ ଉଠୁ କର୍ମୀଙ୍କ ଉଦ୍ଦେଶ୍ୟରେ ପଧାନେ ପଚାରିଲେ, "ବାବୁ ! ଆପଣଙ୍କ ଭୋଜନ ?"

କର୍ମୀ କହିଲେ, "ମୁଁ ଭଗିବାବୁଙ୍କ ଘରେ ଖାଇବ ।"

"ହଉ, ଭଲକଥା ! ଆମେ ତ ସବୁ ମଳମୁଣ୍ଡିଆ ଲୋକ···"

ବାହାରିଗଲେ ପଧାନେ······

ଅନ୍ୟମାନେ ବ ଗୋଟି ଗୋଟି ହୋଇ ତାଙ୍କ ପିଚ୍ଛ ଧରିଲେ । କେବଳ କର୍ମୀ ଆଉ ଝାଉଁଟର ଭଗିଯେନା ବସିଥାନ୍ତି କୋଠ ଘରେ ।

ଢେଙ୍କାନାଳ ଜେଲ

ତା ୮ ଅଗଷ୍ଟ, ୧୯୫୭



# ଦାଗ

କ୍ଷେତରେ ଦୋଳାୟମାନ ପାଚିଲା ଧାନ ଫସଲ ସହିତ ତାଳ ରଖି ଦୋହଲୁଥିଲା ପଞ୍ଚୁଆ ଜୀବନ କ୍ଷେତରେ ଅସରନ୍ତି ଆଶାର ଫସଲ ।

ଅଣ୍ଟାରେ ହାତଦେଇ ହିଡମୁଣ୍ଡରେ ଠିଆ ହୋଇ ପଞ୍ଚୁଆ ଥରେ ନଜର ବୁଲିଗଲା ସେହି ଶସ୍ୟପୂର୍ଣ୍ଣ କ୍ଷେତ ଉପରେ ବୁଲେଇ ଆଣି ଭାବିବାକୁ ଲାଗିଲା— ଧାନ ତ ପାଚି ଗଲାଣି—କାଲିଠୁଁ କାଟିବା ଆରମ୍ଭ କରିଦେବ ସେ । ଭଗବାନଙ୍କ ଦୟାହେଲେ ଏବର୍ଷ ସେ ସବୁ ଋଣରୁ ମୁକ୍ତ ହେବ । ଗତବର୍ଷ ବି ଫସଲ କିଛି ମନ୍ଦ ହୋଇ ନ ଥିଲା । ହେଲେ କ'ଣ ହେବ, ଅଦିନ ବର୍ଷା ଫଳରେ ଫସଲତକ ନଷ୍ଟ ହୋଇଗଲା । ଦରିଦ୍ର ଲୋକଙ୍କ କପାଳକୁ ଭଗବାନ ଯେ ଆକାଶରୁ କାହିଁକି ଅଣ୍ଡା ନିଆଁ ବର୍ଷା କରନ୍ତି, ତା ତାଙ୍କୁହିଁ ଜଣା ।

ପଞ୍ଚୁଆର ଆଖି ବୁଲୁଥିଲା ଧାନକ୍ଷେତ ଉପରେ ପହଁରି ପହଁରି । ପବନର ତାଳେ ତାଳେ ଧାନ ଗଛଗୁଡ଼ିକ ନାଚୁଥିଲେ । ପଞ୍ଚୁଆକୁ ଲାଗିଲା, କଅଁଳିଆର ପ୍ରତ୍ୟେକଟି ଧାନଗଛ ଗୋଟିଏ ଗୋଟିଏ ସୁନାର ଖଡ଼ିକା । ହଁ ସୁନା ! ସେତ ଧାନକୁ ସୁନା ଦରରେ ବିକ୍ରି କରିଛି ଅନେକ ଥର । ଆଜିର ଏ ବଜାର, ଯେଉଁଠି ବ୍ୟବହାର୍ଯ୍ୟ

ଜନଷମାନ ଦୁର୍ମୂଲ୍ୟରୁ ଦୁର୍ମୂଲ୍ୟତର ହେଉଛି, ଆଉ କେତେଦିନ ଗଲେ ସୁନା କ'ଣ, ଧାନ ସୁନାଠୁଁ ଆହୁରି ଦୁର୍ଲ୍ଲଭ ହୋଇପଡ଼ିବ ! ବାସ୍ତବିକ ସ୍ୱରାଜ ପରେ ଦେଶର ଯାହା ଅବସ୍ଥା ସେଥିରେ ମଣିଷ ଆଉ କେତେ ଦିନ ବଞ୍ଚିବ ! ଗୁଡ଼, ଗରିବ ଚାଷୀର 'ସ୍ୱରାଜ' ନେଇ ମୁଣ୍ଡ ଖେଳେଇବା ଅପେକ୍ଷା ଶାଳପତ୍ର ପିକାରେ ନିଆଁ ଧରେଇ, ଧାନ କିଆରୀର ହିଡ଼ ମୁଣ୍ଡରେ ବସି ଆକାଶକୁ ଚୁହିଁବା ଭଲ ।

କିଆରୀରେ ପାଚିଲା ଧାନ ଗଛ ଗୁଡ଼ିକ ଠିଆ ହୋଇଛନ୍ତି । ସତେ ଯେପରି ସ୍ୱର୍ଣ୍ଣଯୁଗର ଗୋଟିଏ ଗୋଟିଏ ଯୁବା ସେମାନେ ! ସତେ ଯେପରି ମଣିଷ ଭିତରେ ଅର୍ଥାତ୍ ଏଇ ପଞ୍ଚୁଆ ପରି ଗରିବ, ମଳମୁଣ୍ଡିଆ ଚାଷୀର ସଂସାରକୁ ପ୍ରତି ମୁହୂର୍ତ୍ତରେ ବିପର୍ଯ୍ୟସ୍ତ କରୁଥିବା ଦାରିଦ୍ର୍ୟ ଭୂତକୁ ଏଇ ସ୍ୱର୍ଣ୍ଣଯୁଗର ଯୁବାମାନେ ବାଡ଼େଇ ବାଡ଼େଇ ଚିରଦିନ ପାଇଁ ତଡ଼ି ଦେବାକୁ ତିଆରି ହୋଇ ଠିଆ-ହେଇଛନ୍ତି !

ଝିଲିକାଏ ପବନ ଖୁବ୍ ଜୋରରେ ପଞ୍ଚୁଆ ଉପର ଦେଇ ବହିଗଲା ! ତା'ର ପରଶରେ ଦୋହଲି ଉଠିଲା ସାମ୍ନାର ସେହି ପକ୍ୱଶାଳୀ ଧାନ କ୍ଷେତର ଧାନ ଗଛ ଗୁଡ଼ିକ । ସେମାନଙ୍କ ଭିତରୁ ଗୋଟିଏ ମଧୁର ଶବ୍ଦ ସୃଷ୍ଟି ହେଲା ପରସ୍ପର ପରସ୍ପର ଦେହରେ ଘଷି ହୋଇ । ପଞ୍ଚୁଆକୁ ଲାଗିଲା ଧାନଗଛ ଗୁଡ଼ିକ ବର୍ତ୍ତମାନ ଗୋଟିଏ ଗୋଟିଏ ଯୋଦ୍ଧା ମିଲିଟାରୀ । ମିଲିଟାରୀଦଳର କର୍କଶ ବୁଟ୍ ଧ୍ୱନି ଓ ବନ୍ଧୁକ୍ ପଞ୍ଚୁଆ ଅନେକ ଥର ଶୁଣିଛି । ବ୍ରିଟିଶ ଅମଳର ମିଲିଟାରୀ ଓ ବର୍ତ୍ତମାନ ସ୍ୱରାଜ ଦେଶର ମିଲିଟାରୀ । ସମସ୍ତେ ନରହନ୍ତା, ଭଡ଼ାଟିଆ, ଦେଶବାସୀଙ୍କୁ ଶୀକାର କରିବା ହେଲା ସେମାନଙ୍କର କାର୍ଯ୍ୟ । କିନ୍ତୁ ଧାନକିଆରୀର ଏ ମିଲିଟାରୀ

ମାନଙ୍କ ଧର୍ମ ହେଲା ସ୍ୱତନ୍ତ୍ର । ଏମାନେ ମଣିଷର ରକ୍ଷକ—ପାଳନ-କର୍ତ୍ତା—ପ୍ରହରୀ । 'ହାଃ ! ହାଃ !! ହାଃ !!!' ଖୁବ୍ ଯୋର୍‌ରେ ହସି ଉଠିଲା ପଞ୍ଚୁଆ ।

କଆଁରେ ଧାନଗଛ ଗୁଡ଼ିକ ଅଦ୍ଭୁତ ଢଂଗରେ ଦୋହଲୁଥିଲେ । ସତେ ଯେପରି କୌଣସି ଏକ ନର୍ତ୍ତକୀ·····ହଁ, ହଁ, ନର୍ତ୍ତକୀ ! ଏ ଧାନଗଛ ଗୁଡ଼ିକ ସେମାନଙ୍କ ଚିତ୍ତାକର୍ଷକ ମୁଦ୍ରା ଓ ନୃତ୍ୟରେ ସମାଜର ଶତକଡ଼ା ୯୫ ଲୋକଙ୍କ ମନକୁ ମୁଗ୍‌ଧକରି କେଣି ନଅନ୍ତ—କେଣି ନଅନ୍ତ ଦାରିଦ୍ର୍ୟ ପ୍ରପୀଡ଼ିତ ମାନବର ମନ ଆଉ ପ୍ରାଣକୁ । ଏମାନେ ବାସ୍ତବିକ ଜୀବନର ପ୍ରତିଚ୍ଛବି !

ଠିକ୍ ଏତିକି ବେଳେ କଆଁରୀ ହୁଡ଼ା ପାଖରେ ତେନ୍ତୁଳିଗଛ ଡାଳରେ ଗୋଟାଏ କାଉ କା'କା' ଶବ୍ଦ କଲା । ପଞ୍ଚୁଆର ଭାବ ପ୍ରବଣତା ହଠାତ୍ ବାଧାପ୍ରାପ୍ତ ହେଲା । ଓଃ ! କା-ଇଁ ଗୋଟାଏ କା'କା ହଉଚୁ ମ ! ନର୍ତ୍ତକୀର କଳ୍ପନା ପାଖରେ କାଉର କାମ କ'ଣ ?

ସୂର୍ଯ୍ୟ ଆସି ମୁଣ୍ଡ ଉପରେ ହେଲେଣି । ପଞ୍ଚୁଆ ଘରକୁ ଫେରିବାର ଉପକ୍ରମ କଲା । ଘରେ ଅନେକ କାମ ବାକୀ ପଡ଼ିଚି । ଆଚ୍ଛା, ଆଗେ ଯାଇ ଖିଆ-ପିଆ ସାରିଲେ ଯୋଉକଥା !

## ଦୁଇ

ଘରେ ପହଞ୍ଚିବା ପରେ ପଞ୍ଚୁଆର ସ୍ତ୍ରୀ ସୁନ୍ଦରୀ ତା' କୋଳକୁ ତା'ର ଚୂରି ମାସର ଶିଶୁ ସନ୍ତାନକୁ ଦେଇ ରୋଷେଇ ଘରକୁ ଗଲା । ଆଜି ରୋଷେଇ ଡେରି ହେଇଚି । ଏକା ମଣିଷ । ସେଥିରେ ପୁଣି ଛୁଆଟାକୁ ନ ଧରିଲେ ସେ ସବୁବେଳେ କାନ୍ଦ ଧରି କମ୍ପଉଚି ।

ପଞ୍ଚୁଆ ଅତି ଆନନ୍ଦରେ ତା'ର ସେହି ସନ୍ତାନକୁ କୋଳକୁ ନେଇ ତା'ର ସେହି ନରମ, ଗୋଲାପୀ ଗଣ୍ଡରେ ଆଙ୍କିଦେଲା ଅସଂଖ୍ୟ ଚୁମ୍ବନ । ପଞ୍ଚୁଆର ହୃଦପୃଟରେ ଏକ ଅଜ୍ଞାତ ଆନନ୍ଦ ଖେଳି ବୁଲୁଥିଲା—ତାଳେ ତାଳେ ନାଚିଉଠୁଥିଲା ମନ—ଶିଶୁ ସନ୍ତାନକୁ କୋଳରେ ଧରି—ସେହି ପାଚିଲା ଧାନକ୍ଷେତରେ ଧାନଗଛ ମାନଙ୍କର ନୃତ୍ୟ ପରି—ସେ ନୃତ୍ୟ ଏକ ଅସରନ୍ତ ଆନନ୍ଦ, ଆଶାର ନୃତ୍ୟ । ପାଚିଲା ଧାନର ସେହି ରେହେରା ଚମକୁଥିଲା ପଞ୍ଚୁଆର ମୁଖ ମଣ୍ଡଳ ଉପରେ—ସତେ ଯେପରି ଫାଲ୍‌ଗୁନର ଖରା ! ପଞ୍ଚୁଆର ମନେ ପଡ଼ିଲା, ଆଜି ପୌଷର ପଞ୍ଚମ ଦିବସ । ଆସନ୍ତା ଆଷାଢ଼ମାସର ଚତୁର୍ଥ ଦିବସରେ ତା'ର ଏଇ ଶିଶୁ ସନ୍ତାନଟିର ଜନ୍ମତିଥି । ତାକୁ ଲାଗିଲା, ଆଗାମୀ ଛଅ ମାସ ଭିତରେ ତା'ର ଏଇ ସନ୍ତାନ ନିଶ୍ଚୟ ବଡ଼ ହୋଇଯିବ । ସେଇଠି ବସିରହି, ରୋଷେଇ ଘରେ ରୋଷେଇକାର୍ଯ୍ୟରେ ବ୍ୟସ୍ତଥିବା ସ୍ତ୍ରୀ ସୁନ୍ଦରୀକୁ ସେ ପ୍ରଶ୍ନ କଲା ବଡ଼ ପାଟିରେ:—

"ହଇଲେ !"

"ଏଁ ?"

"ଛଅ ମାସର ପିଲା କେତେ ବଡ଼ ମ ?"

"ଆମ ଝାଣ୍ଟୁଆ ଯେତେ ବଡ଼, ସେତିକ ।" ଡାଲି ଚୁଙ୍କ ଦଉ ଦଉ ଉତ୍ତର ଦେଲା ସୁନ୍ଦରୀ ।

ପଞ୍ଚୁଆ ଟିକେ ନିରାଶ ହୋଇ ଉଠିଲା । ଆଗାମୀ ଛଅମାସ ପରେ ମଧ୍ୟ ତା'ର ଏହି ଶିଶୁ ଏତିକ ଟିକେନାଁକୁ ଥିବ ? ତାହେଲେ ତିନିଟା ମାସ କଟୁ ନୁହେଁ ? ପୁଣି ମନକୁ ସାନ୍ତ୍ୱନା ଦେଲା ପଞ୍ଚୁ, ନା, ଝାଣ୍ଟୁ ଆଗାମୀ ଛଅ ମାସ ଭିତରେ ବର୍ଷକର ହୁଆ ସହିତ ଠିକ୍‌କରି

ଦବ । ସେ ପୁଣି ଥରେ ତା'ର ସନ୍ତାନ ଝୁଣ୍ଟୁକୁ ଚୁମ୍ବନ ଦେଲା । ହଠାତ୍ ଝୁଣ୍ଟୁ ଦୁଧଗୁଡ଼ାକ ବାନ୍ତ କରି ପକାଇବାରୁ ପଞ୍ଚୁଆ ତାକୁ ମସିଣା ଉପରେ ଶୁଆଇ, ତାକୁ ପୋଛି-ପୋଛି କରି ଦେଇ ତା'ର ଗ୍ଲେଟ, କଅଁଳିଆ ହାତର ଗୋଟିଏ ଆଙ୍ଗୁଠିକୁ ଧରି କହିଲା, "ଝୁ···ଆ···ଣ୍ଟୁ ! ତୁ ଆଉ କାନ୍ଦ୍ନା, ତୁପରା ବଡ଼ ହେଇଗଲୁଣି !"

"ଯାଅ, ତମେ ଗାଧେଇ ଆସିବ ଗଲ ! ତେଲ ନିଅ !" ପଞ୍ଚୁଆ ପାଖରେ ତେଲ ଶିଶି ଥୋଇ ଦେଇ ସୁନ୍ଦରୀ ଝୁଣ୍ଟୁଆକୁ କୋଳକୁ ନେଇ ହସି ହସି କହିଲା, "ବଡ଼ ଦୁଷ୍ଟ ହେଲୁଣି ତୁ ।"

## ତିନି

ଭାତ ବାଢ଼ୁ ବାଢ଼ୁ ସୁନ୍ଦରୀ ସ୍ୱାମୀ ପଞ୍ଚୁଆ ଉଦ୍ଦେଶ୍ୟରେ କହିଲା, "ଏ ସାଲେ ଭଲ ଧାନ ହେଇଚି, ନୁହେଁ ?"

"ହଁ, ପ୍ରଭୁଙ୍କ ଦୟା, ଧାନକଟା କାଲିଠୁ କରିବା, କଣ କହୁଚୁ ? ଆଉ ମାସକ ପରେ ତୋ' ହାରଟା ତିଆରି ହେଇଯିବ ।" କହିଲା ପଞ୍ଚୁଆ ।

କିଛିବେଳ ନୀରବରେ ଗମ୍ଭୀର ରହିବାପରେ ସୁନ୍ଦରୀ କହିଉଠିଲା, "ହଉ, ରଖ ସେ ସୁଆଗିଆ କଥା ଗୁଡ଼ାକ । ଆର ମାସରେ ବା'ଘର ହବାର ତିନି ବର୍ଷ ପୂରିବ । ହାର ଦବ ବୋଲି ପରା ପହିଲି ରାତିରେ କହିଥିଲ ?"

"ଏଇ ମାସରେ ଯଦି ହାର ନ ହେବ ତାହେଲେ ମୋ ନାଁରେ ଛ'ଟା କୁକୁର ପାଳିବୁ । ବୁଝିଲୁ ?"

ସୁନ୍ଦରୀ ଟିକେ ମୁରୁକେଇ ହସିଲା । ଭାତଥାଳିଟି ପଞ୍ଚୁଆ ପାଖରେ ଥୋଉ ଥୋଉ କହିଲା, "କୁକୁର ନା···ମୂଷା ପାଳିବ !"

"କଁ କରିଲୁ ?" ପଞ୍ଚୁଆ ଧରିପକେଇଲା । ସୁନ୍ଦରୀର ଲୁଗା କାନିକୁ ।

"ଛାଡ଼ମ ! ଅଇଁଠା ହାତଟା ପରା !"

"............?"

ଖାଇବା ଆସି ଅଧା ହେଲାଣି । ପଞ୍ଚୁଆ ଅନେଇଁଲା ଦୁଆର ଅଗଣାକୁ । ଅନ୍ଧକାର ! ଦିନରେ ଅନ୍ଧକାର ?? ପ୍ରକୃତିର ବୈଚିତ୍ର୍ୟ ? ଖାଇବା ଛାଡ଼ି ଆସି ଦୁଆର ଅଗଣାରେ ଠିଆ ହୋଇ ଆକାଶକୁ ଅନେଇଲା ପଞ୍ଚୁଆ । ଯାହା ଦେଖିଲା ସେଥିରେ ସେ କାଠ ପାଲଟିଗଲା, ମୁହଁରୁ ଲୋପ ପାଇଲା ଭାଷା । ତା'ର ସମସ୍ତ ସ୍ୱପ୍ନ ହତାଶାର ଅତଳ ସାଗରରେ ଲୀନ ହେବାକୁ ଯାଉଛି । ଆକାଶରେ ବିରାଟ ପଙ୍ଗପାଳ ବାହିନୀର ପ୍ୟାରେଡ୍ ! "ହେ ଭଗବାନ୍ !" ନୀରବରେ ଗୋଟାଏ ମର୍ମଭେଦୀ ଦୀର୍ଘଶ୍ୱାସ ପଞ୍ଚୁଆର ସର୍ବାଙ୍ଗ ଦୋହଲାଇ, ବାହାରି ବିଲୁପ୍ତ ହୋଇଗଲା ଅନନ୍ତ ବାୟୁମଣ୍ଡଳ ଭିତରେ ।

"ସୁନ୍ଦରୀ !!!" ହଠାତ୍ ପଞ୍ଚୁଆର ଆର୍ତ୍ତ- ଚିତ୍କାର !

"କ'ଣ ମ ?!"

"ଆମ କଥା ସରିଗଲା ସୁନ୍ଦରୀ !"

"ମଲା, କ'ଣ ହେଇଚି ମ ? !!"

"ହେଇ ଦେଖ୍ !" ଆକାଶକୁ ଅଙ୍ଗୁଳି ସଙ୍କେତ କଲା ପଞ୍ଚୁଆ । "ହେ ଭଗବାନ !" ହାତରୁ ଥାଳିଟା ଖସି ପଡ଼ିଲା ସୁନ୍ଦରୀର । ବେଳକୁ ବେଳ ଆକାଶ ଅନ୍ଧକାରଚ୍ଛନ୍ନ ହୋଇ ଆସୁଛି, ଦଳକୁ ଦଳ ପଙ୍ଗପାଳ ଛୁଟିଛନ୍ତି ଧ୍ୱଂସ ମୁଖା ହୋଇ । ସର୍ବନାଶର ସୂଚନା ! ହେଇ ! ସେମାନେ ତ ଜମିକୁ ଓହ୍ଲେଇଲେ ରେ !!

"ସୁନ୍ଦରୀ !" ଚିତ୍କାର କରି କହିଲା ପଞ୍ଚୁଆ,

"ଆଣ୍ ମୋ ଗୁଦର ଆଉ ସେ ଢୋଲଟା !"

ଝୀଣ୍ଟୁଆକୁ ଶେଯ ଉପରୁ ନିଜ କୋଳକୁ ନେଇ ସୁନ୍ଦରୀ ଦୌଡ଼ିଲା ଘର ଭିତରକୁ । ଗୁଦର ଓ ଢୋଲ ଆଣି ବଢେଇ ଦେଲା ପଞ୍ଚୁଆ ହାତକୁ । ପଞ୍ଚୁଆ ଗୁଦରଟାକୁ କାନ୍ଧରେ ପକାଇ, ଢୋଲଟାକୁ ବେକରେ ଗଳାଇ କହିଲା, "ଆ, ବିଲକୁ ଆ !"

ଉତ୍ତରକୁ ଅପେକ୍ଷା ନ କରି ପଞ୍ଚୁଆ କ୍ଷେତମୁହାଁ ହୋଇ ଦୌଡ଼ିବାକୁ ଲାଗିଲା । ସୁନ୍ଦରୀ ମଧ୍ୟ ତରବରରେ ଘରେ ତାଲା ଠୁଙ୍କି, ନିଜ ଶିଶୁପୁତ୍ରକୁ କୋଳରେ ଧରି ପଞ୍ଚୁଆ ପଛେ ପଛେ ଦୌଡ଼ିଲା ବିଲକୁ ।

ଧାନବିଲ ପାଖରେ ପହଞ୍ଚି ସୁନ୍ଦରୀ ପାଖ ହିଡ଼ ମୁଣ୍ଡରେ ଥିବା ତେନ୍ତୁଳି ଗଛ ଛାଇରେ ଖଣ୍ଡେ କନା ପାରି ଝୀଣ୍ଟୁଆକୁ ଶୁଆଇ ଦେଲା । ପଞ୍ଚୁଆ ଘରୁ ନେଇଥିବା ଗୁଦରଟିର ଗୋଟିଏ ମୁଣ୍ଡ ସୁନ୍ଦରୀ ଆଡ଼କୁ ବଢାଇ ଦେଲା, ନିଜେ ଗୋଟିଏ ମୁଣ୍ଡ ବାଁ ହାତରେ ଧରି, ଡାହାଣ ହାତରେ ବେକରେ ଝୁଲୁଥିବା ଢୋଲ ପିଟିଲା । ତାପରେ ଦୁହେଁ ବେଶି ପାଚିଲା ଧାନ କିଆରୀ ମଝିରେ ପଙ୍ଗପାଳ ହୁରୁଡ଼େଇବା ପାଇଁ ଗୁଦର ହଲାଇ ହଲାଇ, ଢୋଲ ପିଟି ପିଟି ଦୌଡ଼ିଲେ ।

ଗୁଦରଟି ପଙ୍ଗପାଳଙ୍କୁ ଆଗକୁ ତଡ଼ିନେବାରେ ଯଥେଷ୍ଟ ସହାୟକ ହେଲା । ଅନେକ ସମୟ ଦୁହେଁ ଦୌଡ଼ି ଦୌଡ଼ି କ୍ଳାନ୍ତ, ତଥାପି ପଙ୍ଗପାଳ ଭୟ ପାଚିଲା ଧାନ କ୍ଷେତ ଉପରୁ ଛାଡ଼ୁ ନାହିଁ ।

"ଝୀଣ୍ଟୁ କାନ୍ଦୁଛି ନା କ'ଣ ? !" ହଠାତ୍ ଠିଆ ହୋଇପଡ଼ି କହିଲା ସୁନ୍ଦରୀ ।

ଢୋଲ ପିଟି ଦୌଡ଼ୁ ଦୌଡ଼ୁ ପଞ୍ଚୁଆ ସମ୍ମତି ଜଣାଇଲା "ହୁଁ !"

ସେତେବେଳକୁ ପାଖର କ୍ଷେତମାନଙ୍କର କୃଷୀମାନେ କଅଁ ହୁଳା, ଢୋଲ ଆଦି ନେଇ ଆସି ଯାଇଥିଲେ । ଗୃହଆଡ଼େ ହୋ' ହା, ପାଟି ତୁଣ୍ଡ, ଢୋଲପିଟା ଫଳରେ ପଙ୍ଗପାଲବାହିନୀ ଗୋଟିଏ କ୍ଷେତରୁ ଅନ୍ୟ କ୍ଷେତକୁ ଅପସରି ଯାଉଥାନ୍ତି । ପଞ୍ଚୁଆର ତଥାପି ଢୋଲପିଟା, ପାଚିଲା ଧାନ କ୍ଷେତ ଭିତରେ ଫସଲର ବୁକୁ ଉପରେ ଦୌଡ଼ିବାର ବିରାମ ନାହିଁ । ଅନ୍ୟଦିନେ ଯଦି କେହି ତା' କ୍ଷେତ ଭିତରେ ଏମିତି ଦୌଡ଼ିଥାନ୍ତା, ତାହେଲେ ତା ତଣ୍ଟି କଣାକରି ରକ୍ତ ପିଇଯାଇଥାନ୍ତା ପଞ୍ଚୁଆ । କିନ୍ତୁ············ଆଜି ? !!

କ୍ଷେତଭିତରେ ଦୌଡ଼ୁ ଦୌଡ଼ୁ ପଞ୍ଚୁଆ ଅନାଇଲା ସହଧର୍ମିଣୀ ସୁନ୍ଦରୀର ମୁହଁକୁ । ସୁନ୍ଦରୀ ମୁହଁରେ ସେତେବେଳକୁ ଶୋକର ଏକ ଘନଭୂତ ଛାୟା ! ଏ ଅବସ୍ଥାକୁ ଲକ୍ଷ୍ୟକରି ଠିଆହେଲା ପଞ୍ଚୁଆ ।

ଟିକେଣେ ଦୂର ତେନ୍ତୁଳିଗଛ ତଳେ ଶୋଇଥିବା ପଞ୍ଚୁଆର ଶିଶୁପୁଅ ଝାଟୁଆ ଖୁବ୍ ଯୋର୍‌ରେ କାନ୍ଦିବା ଆରମ୍ଭ କରିଦେଇଛି । ଅତି ଅନୁନୟ ଭରା ସ୍ୱରରେ ସୁନ୍ଦରୀ କହିଲା, "ଶୁଣୁଚଟି ? ଟୁଆଟା ଟିକେଣେ କାନ୍ଦି କାନ୍ଦି ତା' ଅବସ୍ଥା ସରିଲାଣି ।"

"ରହ, ଅବିକା କିଛି କହନା । ଆମ ଆଧାର ଚାଲିଯିବା ଉପରେ । ଧ ଚୁଦର ! ଆ !!" ପୁଣି ଢୋଲ ପିଟି, ଚୁଦର ହାଲଇ ଦୁଇପ୍ରାଣୀଯାକ ଦୌଡ଼ିବାରେ ଲାଗିଲେ ।

ଦୀର୍ଘ ୨ ଘଣ୍ଟା କାଳ ଅବିଶ୍ରାନ୍ତ ପରିଶ୍ରମପରେ ପଙ୍ଗପାଳ ଦଳ ସମ୍ପୂର୍ଣ୍ଣରୂପେ ସେଠାରୁ ଚାଲିଗଲେ । ଦୁଇ ପ୍ରାଣୀଯାକ ଶାନ୍ତିର ଏକ ନିଶ୍ୱାସ ପକାଇ ଭଗବାନଙ୍କ ଉଦ୍ଦେଶ୍ୟରେ ଦଣ୍ଡବତ ହେଲେ ।

"ଝୀଅଟି କଣ କାନ୍ଦ କାନ୍ଦ ଶୋଇ ପଡ଼ିଲା !" କହିଲା ସୁନ୍ଦରୀ ।

ଚଇଁଆ ଉତ୍ତର ଦେଲା, "ହଁ, ଆଉ ତ କାନ୍ଦୁ ନାହିଁ !" ଏତକ କହି ସେ ଦୃଷ୍ଟି ନିକ୍ଷେପ କଲା ଦୂର ଦିଗ୍‌ବଳୟ ଉପରେ । ପଙ୍ଗପାଳ ବାହିନୀର ଅପସାରଣର ଶେଷ କଳଙ୍କ ଟିକିଟା ଦୃଷ୍ଟି ଗୋଚର ହେଉଛି, "ହାଃ ! ହାଃ !! ହାଃ !!! ଶଳା ଗୋଟାଏ ଗଛବି ରଖି ନ ଥାନ୍ତେ ! ଚାଲ, ଯିବା ଚାଲ !!" କହି ଚଇଁଆ ପାଦ ବଢ଼େଇଲା ଆଗକୁ । ପଛରେ ତା'ର ସହଧର୍ମିଣୀ ସୁନ୍ଦରୀ ।

ହିଡ଼ମୁଣ୍ଡର ତେନ୍ତୁଳି ଗଛ—ଯେଉଁଠି ଦୁହେଁ ଶୁଆଇ ଦେଇ ଯାଇଥିଲେ ନିଜର ଶିଶୁପୁତ୍ରକୁ ସେଇଠି ଆସି ପହଞ୍ଚିଲେ । ଚଇଁଆ ନଇଁପଡ଼ି ଉଠାଇବାକୁ ଗଲା ତାର ସେହି ଦାମ୍ପତ୍ୟ ପ୍ରେମର ବାଞ୍ଛିତ ଫଳଟିକୁ । ??????? !!!! ହାତ ଅଚଳ ! ନିର୍ବାକ୍, ନିସ୍ପନ୍ଦ ଚଇଁଆ । ସେ ପ୍ରଥମେ ପୁଅକୁ ଉଠେଇବାକୁ ଯାଇ ଯେପରି ନଇଁ ପଡ଼ିଥିଲା, ସେଇମିତି ନଇଁ ରହି ଯାଇଛି, ପାଦତଳର ବନ୍ଧୁର ମାଟିଟା ସତେ ଯେପରି ରସାତଳଗାମୀ ହେବାକୁ ଯାଉଛି ! ଯେଉଁ କନା ଖଣ୍ଡିକରେ ଶୋଇଥିଲା ଝୀଅଟିଆ, ସେହି କନାଖଣ୍ଡିକ ଉପରେ ଅଛି କେବଳ ଏକ ଶିଶୁର କଂକାଳ, ତା'ର ଚତୁପାର୍ଶ୍ୱରେ କେତେ ବୁନ୍ଦା ରକ୍ତର ଦାଗ !!

କଟକ
୧୭।୩।୭୧

# ଗ୍ରାସ

— ଏକ —

ସେଇ ତିନି ଆଙ୍ଗୁଳ ମାପର ଲୁହା ଧାରଣା ଉପରେ କେତେ ପାସେଞ୍ଜର, ଏକ୍‌ସପ୍ରେସ୍, ମାଲ୍‌ଗାଡ଼ି 'ଧପାସ୍', 'ଧପାସ୍' ହୋଇ ଗଡ଼ି ଯାଆନ୍ତି ଆଗକୁ । ସେମାନଙ୍କର ସେଇ ଘନ ଘନ ସିଟିରେ ମୁଖରିତ ହୋଇଉଠେ ଷ୍ଟେସନ୍ ପାଖରେ ଥିବା ନିର୍ଜନ ପାର୍କଟା । ସହର ଉପରେ ଯେତେବେଳେ ସନ୍ଧ୍ୟାର ଘନ-ଆସ୍ତରଣ ବିଛେଇ ହୋଇଯାଏ, ମାଡ଼ିଆସେ ବିଶ୍ୱବସ୍ତିର ଘନୀଭୂତମାନ ଅନ୍ଧକାର, ଠିକ୍ ସେତିକବେଳେ ଲାଇଟ୍‌ଗୁଡ଼ାକ ଫଟ୍‌ଫାଟ୍ ଜଳିଉଠେ ବତି-ଖୁଣ୍ଟମାନଙ୍କରେ । ମୁଷାଫିର୍‌ଖାନା ଆଡ଼େ ଲମ୍ବି ଯାଇଥିବା ପିଚୁ-ରାସ୍ତାର ଓସାରିଆ ଛାତିରେ ଯେତେବେଳେ ଜମିଉଠେ ଜନତାର ସାନ୍ଦ୍ର-ସମାଗମ; ସେତେବେଳେ କେତେ ରଙ୍ଗ-ବେରଙ୍ଗ ଶାଢ଼ୀ, ଘନ-କୃଷ୍ଣ ଗନ୍ଧରେ ଭୂଷିତ ହୁଅନ୍ତି ପାର୍କର ସେଇ ,ସିମେଣ୍ଟ ନିର୍ମିତ ବେଞ୍ଚ୍‌ଗୁଡ଼ାକ । କୋମଳମତି ଶିଶୁଙ୍କର କଳରବରେ ମୁଖରିତ ହୋଇଉଠେ ସେଇ ପାର୍କଟା ।

ରାତିର ଅନ୍ଧକାର ଯେତେବେଳେ ଗାଢ଼ରୁ ଗାଢ଼ତର ହୁଏ, ଯେତେବେଳେ ପାଖ ମିଲଟାର କଲୋନିର ଘଣ୍ଟା ଘୋଷଣା କରେ ରାତି ଦଶଟା ବୋଲି, ସେତେବେଳେ ବନ୍ଦ ହୋଇଯାଏ ପାର୍କର ଫାଟକ—ସମସ୍ତେ ଫେରିଗଲେଣି ନିଜ ନିଜ ବାଟରେ ପଦଚିହ୍ନ ଆଙ୍କି। କିନ୍ତୁ—ପାର୍କର ଫାଟକ ପାଖକୁ ଲାଗି କେଉଁ ଏକ ଅଜ୍ଞାତ କାଳରୁ ପଡ଼ିଥିବା ବିରାଟ କାୟ ପ୍ରସ୍ତର ଖଣ୍ଡ ଉପରେ ବସିରହେ ଗୋଟିଏ ଲୋକ। ଅବୟବ ଜରା-ଜୀର୍ଣ୍ଣ, ଚକ୍ଷୁ କୋଟରଗତ, ଊର୍ଣ୍ଣନାଭର ଜାଲ ପରି ମୁଖମଣ୍ଡଳରେ ଅସୁମାରି ଗାର—କପାଳରେ ଗଭୀର ଚିନ୍ତାର ରେଖା ସୁସ୍ପଷ୍ଟ। ଜୀବନ ପ୍ରଦୀପ ନିଷ୍ପ୍ରଭ ପ୍ରାୟ! ଲୋକଟି ବହୁସମୟ ଧରି ସେଠି ବସିବା ପରେ ଉଠି ଠିଆହୁଏ। ଘୁରିଆଡ଼କୁ ଅନାଏ ଉଦାସ ଓ ଅର୍ଥଶୂନ୍ୟ ଦୃଷ୍ଟିରେ। ତାପରେ ଧୀରେ ଧୀରେ ପାଦ ତା'ର ପଡ଼େ ଆଗକୁ—କ୍ରମେ ସେ ଲୀନ ହୋଇଯାଏ ରାତିର ଅନ୍ଧକାର ଭିତରେ।

ପ୍ରାୟ ଅଧଘଣ୍ଟେ ପରେ —

—ଷ୍ଟେସନଠୁଁ ଅଳ୍ପ ଦୂରରେ ଥିବା ଗୋଡ଼ସାଇ ପାଣବସ୍ତିର ଏକ ଦଦରା, ଜରା-ଜୀର୍ଣ୍ଣ କୁଡ଼ିଆ ସାମ୍ନାରେ ଠିଆହୋଇ ଏକ ମୂର୍ତ୍ତି ଡାକ ଦିଏ—"ସେ ଦରା! ସୋଦରା !!···"

କୁଡ଼ିଆର ବରଡ଼ା ତାଟି ମେଲାହୁଏ—ଭିତରୁ ବାହାରିଆସେ ଯୁବକଟିଏ। ଆଖିରେ ଅପ୍ରଚୁର ତନ୍ଦ୍ରାର ତିକ୍ତ ସ୍ପର୍ଶ—ତନ୍ଦ୍ରାଜଡ଼ିତ କଣ୍ଠର କର୍କଶ ସ୍ୱର। ସେ ପ୍ରଶ୍ନ କରେ—'ଏତେ ରାତିଯାଏଁ କୋଉଠି ଥେଲୁମ ?"

ମୂର୍ତ୍ତିଟି କିଛି ନ କହି ନୀରବରେ ଢୁକେ କୁଡ଼ିଆ ଭିତରକୁ । ଠିକ୍ ତାପରେ ଶୁଭେ କେଉଁ ଏକ ଦନ୍ତହୀନା, ଘଗାର୍ତ୍ତି ତା ବୃଦ୍ଧାର କଣ୍ଠସ୍ୱର—"ବାଡ଼ପଡ଼ା, ଯାଇଥିଲୁ ତ ମଲୁ ନାହିଁ ପିଆଜେ଼ ! ପୁଣି ଏଠିକି ଦୌଡ଼ିଆଇଲୁ କାହିଁକି ?"

## — ଦୁଇ —

ନିଶାର୍ଦ୍ଧ ।

ଚରାଚର ବର୍ତ୍ତମାନ ସୁପ୍ତ । ଚତୁର୍ଦ୍ଦିଗରେ ଗଭୀର ତନ୍ଦ୍ରା ଓ ଘୋର ନୀରବତା ବିଦ୍ୟମାନ ।

ଗୋଡ଼ସାଇ ପାଣବସ୍ତିର ସେଇ ଜରା-ଜୀର୍ଣ୍ଣ କୁଡ଼ିଆର ବରଣ୍ଡାତାଟ ଠେଲି ପଦାକୁ ଆସିଲା ବରଜୁ । ଉପରେ ତମସାଚ୍ଛନ୍ନ-ମେଘଯୁକ୍ତ ଆକାଶ, ତଳେ ନିସ୍ତବ୍ଧ ଧରଣୀ । କିଛି ସମୟ ସେଇମିତି ଠିଆହେଲାପରେ ଆଗକୁ ପାଦ ବଢ଼େଇଲା ବରଜୁ । ସେ ଆଜି ଅନନ୍ତ ନିଦ୍ରାର ଅଭିଳାଷୀ ।

ହେଇ ! ଆଗରେ ସବୁଦିନର ସେଇ ପରିଚିତ ପାର୍କ, ସେଇ ଶିଳାଳିକାପୂର୍ଣ୍ଣ ପ୍ରସ୍ତର ଖଣ୍ଡ ଆଉ ପାଖଦେଇ ଲମ୍ବିଯାଇଛି ସେଇ ପରିଚିତ ଲୁହା ଧାରଣା ଦୁଇଟି ।

ହଁ, ଦିନ ଥିଲା, ଯେତେବେଳେ ନିଜର ବୃଦ୍ଧପିତା ହାତରୁ ନିଜ ହାତକୁ ଘୋଡ଼ାର ନାଗାମ୍ ନେଇଥିଲା ବରଜୁ, ଏଇ ସାମ୍ନାରେ ଲମ୍ବିଯାଇଛି ଯୋଉ ସଡ଼କ, ତା'ର ଗୁଡ଼ି ଉପରେ ଖୁବ୍ ଜୋରରେ ଘୋଡ଼ା ପିଠିରେ ଚାବୁକ୍ କଷି ଦୌଡ଼େଇଥିଲା ଘୋଡ଼ାଗାଡ଼ି ।

କିନ୍ତୁ···ଆଜି ?

ସେଇ ସଡ଼କ ଅଛି, ଅଛି ସେଇ ବରଜୁ । ଅଛି ସେଇ ସହର; କିନ୍ତୁ ଘୋଡ଼ା ନାହାନ୍ତି—ଅକର୍ମଣ୍ୟ ହୋଇ ପଡ଼ିଛି—ଘୋଡ଼ାଗାଡ଼ି ।

ବରଜୁର ଦିନେ ଦୃଢ଼ ଆତ୍ମପ୍ରତ୍ୟୟ ଥିଲା, ଦୁନିଆ ଯେ କୌଣସି ସମସ୍ୟାର ସମ୍ମୁଖୀନ ହେଉନା କାହିଁକି ଏଇ ସହର ଥିବ— ତା'ର କୋଳରେ ସେ ବଞ୍ଚି ରହିବ ନିଜେ—ବେପରବାୟ ଭାବରେ ଛୁଟେଇବ ଘୋଡ଼ାଗାଡ଼ି—ଜୀବନ ଧାରଣ ପାଇଁ ତାକୁ ନିଶ୍ଚୟ ଦି'ପଇସା ମିଳିବ !

କିନ୍ତୁ···ବର୍ତ୍ତମାନ ?

ସେ ବିଶ୍ୱାସ, ସେ ଆଶା ତା'ର କୁଆଡ଼େ ବୁଦ୍‌ବୁଦ୍ ପରି ମିଳେଇ ଯାଇଛି । ଆଉ ଘୋଡ଼ାଗାଡ଼ି ଦୌଡ଼ୁ ନାହିଁ—ଜୀବନଧାରଣ ପାଇଁ ଅନ୍ୟ ପନ୍ଥାର ପ୍ରୟୋଜନ ପଡ଼ୁଛି ଆସି । କାରଣ ?

ଯୋଉ ଗେରୁଆ ସଡ଼କର ଓସାରିଆ ଗ୍ରୁଣ୍ଡରେ ଦିନେ ଦ୍ରୁତଗତିରେ ଦୌଡ଼ିଥିଲା ବରଜୁର ଗୋଡ଼ାଗାଡ଼ି, ବର୍ତ୍ତମାନ ସେଇ ସଡ଼କକୁ ଅତିକ୍ରମ କରି ଦୂରରୁ ଦୂରକୁ ଲମ୍ବିଯାଇଛି ରେଲ୍‌ଲାଇନ୍ । ଯେଉଁ ସଡ଼କରେ ଦିନରାତି ଛୁଟିଥିଲା ବରଜୁର ଦୁଇ ଅଶ୍ୱ ବିଶିଷ୍ଟ ନନ୍ଦଘୋଷ; ଘୋଡ଼ା ଠାପୁର ଟପ୍ ଟପ୍ ଶବ୍ଦରେ ଧ୍ୱନିତ ହେଉଥିଲା ଗଛ ପଥର ଉଭୟ ପାର୍ଶ୍ୱ; ସେଇ ସଡ଼କରେ ଆଜି ଛୁଟିଛି, ଟ୍ରକ୍, ବସ, ମୋଟର ସାଇକେଲ ଇତ୍ୟାଦି ଅତ୍ୟାଧୁନିକ ଯାନ-ବାହନ । ଫଳରେ ବରଜୁର ଜୀବନଧାରଣ ପଥ ରୁଦ୍ଧ ହୋଇଛି ଅଥବା ସ୍ଥାଣୁ ପାଲଟିଛି ତା'ର ନନ୍ଦଘୋଷ । ଚକ ଭାଂଗିଛି, ଅଖ ହଗୁଳିଛି—ଦୁର୍ବହ ହୋଇ ଉଠିଛି ତା' ଜୀବନ ।

ଝୁଲୁ ଝୁଲୁ କାହିଁକି ଚମକି ପଡ଼ିଲା ବରଜୁ ! ତା' ପାଖଦେଇ ସାଏଁ କିନା ଚାଲିଗଲା ଏକ ମାଲ୍ ବୋଝେଇ ଟ୍ରକ୍ ରାତିର ଘାର୍ଘ-ନୀରବତାକୁ ମଥିତକରି । କ୍ରୋଧ ଓ ଘୃଣାରେ ଶତ-କୁଞ୍ଚିତ ହୋଇ ଉଠିଲା ବୃଦ୍ଧ ବରଜୁର କପାଳ । ପ୍ରତିହିଂସା ପୂର୍ଣ୍ଣ ଚାହାଣୀରେ ସେ ଥରେ ତା'ର ଦୃଷ୍ଟିକୁ ନିକ୍ଷେପ କଲା ସାମ୍ନାରେ ଅଦୃଶ୍ୟ ହୋଇ ଯାଉଥିବା ସେଇ ଟ୍ରକ୍‌କୁ, ତା'କୁ ଜଣାଗଲା, ସତେ ଯେପରି ସେ'ଟା ଟ୍ରକ୍ ନୁହେଁ, ଗୋଟାଏ ମସ୍ତବଡ଼ ଓଲିଆ ଗାଈ ! ତା' ଜୀବନ-କ୍ଷେତରେ ପଶି ଫସଲ ତକ ଖାଇ ଖାଇ ଚାଲିଯାଉଛି !

ନିଜର ଗନ୍ତିପଥରେ ବରଜୁର ମନେପଡ଼ିଲା ସ୍ତ୍ରୀ ରାଧୀ କଥା । ମନେପଡ଼ିବା ମାତ୍ରେ ସାମ୍ନାରେ ତା'ର ମୂର୍ତ୍ତିମନ୍ତ ହୋଇ ଠିଆହେଲା ଆସି ଏକ ଆଡ଼ମ୍ବର, ପରିପାଟୀ-ବିହୀନ ଜୀର୍ଣ୍ଣ—ସଂସାର । ଭଂଗା, ନୁଆଣିଆଁ, ବରଡ଼ା ଟାଟିଦିଆ କୁଡ଼ିଆ—ଦୁର୍ଗନ୍ଧରେ ନାକ ଫାଟିଯାଏ । ଲଂଗଳା, ବେଙ୍ଗା, ଭୋକିଲା ଛୁଆ ଏବଂ ହାତରେ ପହଁରା ମୁଠାଧରି, ମଇଳା, ଚୀରା, ରଫୁକରା କବଟା ଖଣ୍ଡେ ବେଢ଼େଇ ହୋଇ ହାଣ୍ଡି ଖରକୁ ଥିବା ସ୍ତ୍ରୀ ରାଧୀର ପ୍ରତିଛବି । ହଁ, ବରଜୁର ଠିକ୍ ମନେପଡ଼ିଲା, ଯୋଉ ଦିନ ରାଧୀ ପ୍ରଥମେ ନୂଆକରି ବୋହୂ ହୋଇ ଆସି ପାଦ ଦେଇଥିଲା ତା' କୁଡିଆରେ, ସେ ଦିନ ଏବଂ ମଧୁଶଯ୍ୟା ରାତିଟି ଛଡ଼ା ସେ (ବରଜୁ) ଏପର୍ଯ୍ୟନ୍ତ ତାକୁ ଖଣ୍ଡେ ଭଲ ସଫା ଲୁଗା ପିନ୍ଧିବାର ଦେଖି ନାହିଁ ।

"ଉଃଃଃ !!"

ଏକ ପଞ୍ଜରାଥରା, ମଜ୍ଜାଦୋହଲା ଘାର୍ଘଶ୍ୱାସ ବରଜୁର ସର୍ବାଙ୍ଗ ଦୋହଲାଇ ବାହାରି ଆସିଲା ପଦାକୁ—ସଇତାନୀ ଭୁହାରେ । କାରଣ, ଆଉ କେତୋଟି ମିନିଟ୍ ମାତ୍ର ଆଗରେ ତା'ର । ତା'ପରେ ସେ

ଛୁଟି ପାଇବ ଚିରଦିନ ପାଇଁ ଏ ଦୁନିଆରୁ । ସେଥିପାଇଁ ଅବଶ୍ୟ ତା'ର ଶୋଚନା ନାହିଁ, କିନ୍ତୁ ସୁଧୀ ? "ନାଃ ! ଗୁଡ଼୍, ତାଙ୍କୁ ଭଗବାନ ଯେ କୌଣସି ମତେ ଚଳେଇ ନେବେ ଯେ ! କିନ୍ତୁ ସୋଦଶ୍ରୀ ଆଉ ତା'ପିଲାଏ ?"

ଝିଅ ଭିତରେ ବରଜୁର ସେଇ ଗୋଟିକ ଝିଅ—'ସୋଦଶ୍ରୀ' । କିନ୍ତୁ ବଗୃଶ୍ରୀ ହତଭାଗୀ ! ବରଜୁ ତାକୁ ବାଛି ବାଛି ବାହା ଦେଇଥିଲା ଭଲ ଜାଗାରେ । ଜୋଇଁ କାମ କରୁଥିଲା ଜାହାଜ କମ୍ପାନୀରେ । ମାସକୁ ମାସ ଟଙ୍କା ଆସୁଥିଲା — ଆସୁଥିଲା ନାନାରକମର ଜିନିଷ । ଦୈବ କିନ୍ତୁ ସହିଲା ନାହିଁ । ବାହାଘର ହେବାର ତିନି ବର୍ଷ ପରେ ଜୋଇଁ ମଲା — ଝିଅ ହେଲା ବିଧବା । ଦିଓଟି ସନ୍ତାନର ଜନନୀ ସାଜ ପୁଣି ସେ ଫେରିଆସିଲା ବରଜୁର ଭଙ୍ଗା କୁଡ଼ିଆକୁ ।

× × × ×

ରସ୍ତା ଗୁଡ଼ ଦକ୍ଷିଣମୁହାଁ ହୋଇ ରେଳରାସ୍ତାର ଧାରେ ଧାରେ ଆଗେଇ ଚାଲିଲା ବରଜୁ । ଚାଲୁ ଚାଲୁ ସେ ବସିପଡ଼ିଲା । ଓଃ ! ମୁଣ୍ଡଟା କାହିଁକି ଝାଇଁ ଝାଇଁ ହୋଇ ଯାଉଚି !!

କିଛି ସମୟ ପରେ—

ଦୂରରୁ·····ବହୁ ଦୂରରୁ ବରଜୁର ଦୃଷ୍ଟିଗୋଚର ହେଲା ସୂର୍ଯ୍ୟୋଦୟ ପରି ଏକ ଉଜ୍ଜ୍ୱଳ ଆଲୋକ, ହଁ, ବର୍ତ୍ତମାନ ମେଲ୍ ଆସିବା ଟାଇମ୍ !

ନିଜର ଅଜ୍ଞାତରେ ଖୁବ୍ ଯୋରରେ କାହିଁକି ହସି ଉଠିଲା ବରଜୁ ! —

"ହାଃ !...ହାଃ !!...ହାଃ !!!"

( ଓଃ ! ସେ ହସ କ ବକଟ ! )

ହେଇ ! ଆସିଗଲା ମେଲ୍ । ଆସୁ । ଯାହା ଚକର ନିବିଡ଼ ସ୍ପର୍ଶରେ ଚିରଦିନ ପାଇଁ ଦୁନିଆର ସମସ୍ତ ଜଞ୍ଜାଳରୁ ମୁକ୍ତି ପାଇବ ବୃଦ୍ଧ ବରଜୁ । ସେଇ ଦୁର୍ଦ୍ଦାନ୍ତ ଲୌହ ଦାନବ ହେଇ ମାଡ଼ି ଆସୁଛି ଅଦିନର ଝଡ଼ଭଳି ବୀର ଦର୍ପରେ !

ପ୍ରାପ୍ତ କେତେ ସେକେଣ୍ଡ୍ ମାତ୍ର !!

ଆଖି ପିଛୁଳାକେ ପ୍ରଳୟଙ୍କରୀ ଶବ୍ଦରେ ଚାଲିଗଲା ମେଲ୍ । କିନ୍ତୁ.........

ଅସମ୍ପୂର୍ଣ୍ଣ ରହିଗଲା ବରଜୁର ସଂଚିତ ଆକାଙ୍କ୍ଷା, ଗୋଡ଼ ଥରିଲା—ମନ ପଛେଇଲା—କାହାର ଶକ୍ତି—ମମତା-ରଜ୍ଜୁ ସତେ ଯିମିତି ତାକୁ ଭିଡ଼ି ଧରିଲା ପଛକୁ !

ହଠାତ୍ ନିଜ ପାଦ ପାଖରେ ବରଜୁ ଅନୁଭବ କଲା ଏକ ଗୋଲାକାର ବସ୍ତୁର ସ୍ପର୍ଶ । ରାତିର ସେଇ ନିବିଡ଼ ଅନ୍ଧକାର ଭିତରେ ନଇଁପଡ଼ି, ହାତମାରି ବରଜୁ ଦେଖିଲା, ଖୁବ୍ ସଫା କନାରେ ଗୁଡ଼ିଆ ହୋଇଥିବା ଗୋଟା ପୁଟୁଳା । କୌତୁହଳାକ୍ରାନ୍ତ ହୋଇ ବସିପଡ଼ି ସେ ତାକୁ ଖୋଲି ଯାହା ଦେଖିଲା ସେଥିରେ ବିସ୍ମିତ ନ ହୋଇ ସେ ରହିପାରିଲା ନାହିଁ । ଠିକ୍ ତା'ପରେ ପରେ ଅଜାଣତରେ ତା' ନିଜ ପାଟିରୁ ବାହାରି ଆସିଲା, "ଭ-ଗ-ବା-ନ୍ ! ତୁ ବଡ଼ଲୋକ ।"

ପୁଟୁଳା ଭିତରେ ଥିଲା, ଗୋଟାଏ ମନିବ୍ୟାଗ୍ ଓ କନାରେ ଫୁଲ ଆଙ୍କିବାର କେତେକ ସରଞ୍ଜାମ । ମନିବ୍ୟାଗ୍‌ଟି ଖୁବ୍ ଓଜନ ଲାଗୁଥିଲା । ବାଃ ! ଭାଗ୍ୟ ତେଜ୍ ।

ବରଜୁ ହଠାତ୍ ଦେଖିଲା, ଦ୍ରୁତଗାମୀ ମେଲ୍‌ଟା ଯାଇ ଥୋଡ଼ାଏ ଦୂରରେ ଠିଆ ହୋଇଛି—ଭାସି ଆସୁଛି ଯାତ୍ରୀଙ୍କର ଚିତ୍କାର ଏବଂ କୋଳାହଳ ।

( "କଥା କ'ଣ !! ) ମନେ ମନେ ଚିନ୍ତିତ ହୋଇପଡ଼ିଲା ବରଜୁ । ନା, ଅବିଳମ୍ବେ ଏ ସ୍ଥାନତ୍ୟାଗ ଆବଶ୍ୟକ ।

ମନିବ୍ୟାଗ୍‌ଟିକୁ ଦୃଢ଼ମୁଷ୍ଟିରେ ଚାପିଧରି ଘରମୁହାଁ ହୋଇ ଆଗେଇ ଚାଲିଲା ବରଜୁ ।

× × × ×

ଅର୍ଦ୍ଧାହାର, ଅନାହାର, ଦୁଃଖ, ଶୋକ, ରୋଗ, ଯନ୍ତ୍ରଣାରେ ପ୍ରାୟ ବିତିଯାଉଥିଲା ବରଜୁର ଜୀବନ । ପ୍ରତିଦିନ ସ୍ତ୍ରୀ ସ୍ୱାମୀ ସହିତ ତା'ର ଲାଗୁଥିଲା ଝଟପଟା କଜିଆ । ଦୁଇଜଣଙ୍କର ପାଟିରେ ପଡ଼ିଶା ଲୋକେ ବି ଶାନ୍ତିରେ ଟିକେ ନିଶ୍ୱାସ ମାରି ପାରୁ ନ ଥିଲେ ।

ଅଧିକାଂଶ ଦିନ ସକାଳୁ ଗାଡ଼ିରେ ଘୋଡ଼ା ଯୋଚି ବାହାରି ଯାଉଥିଲା—ଫେରୁଥିଲା, କୋଉଦିନ ରାତି ଗୋଟାଏ ବା ଦୁଇଟାରେ । କ୍ଷୁଧା-ତୃଷାରେ ଜର୍ଜରିତ କର୍ମକ୍ଲାନ୍ତ ବରଜୁ କୁଡ଼ିଆକୁ ଫେରି ଦେଖିବାକୁ ପାଉଥିଲା, ସେ ପର୍ଯ୍ୟନ୍ତ ଚୁଲି ଲାଗିନାହିଁ । ବିଧବା ଝିଅ ସୋଦରା—ତା'ର ହାଡ଼ଓଠିଯାକ ଛୁଆ ଭୂଇଁରେ ବସ୍ତ୍ର ହୋଇଥିବା ଅଖା ଖଣ୍ଡିକ ଉପରେ ନିଘୋଡ଼ ନିଦରେ ଅଚେତ । ସ୍ତ୍ରୀ ସ୍ୱାମୀ

ମଧ୍ୟ ଶୋଇ ଘୁଙ୍ଗୁଡ଼ି ମାରୁଚ । ଘୋଡ଼ାଗାଡ଼ିର ମଇଳା ଲଣ୍ଠନ ଜାଳି, ତା'ର ଆଲୋକରେ ବରଜୁ ଦେଖୁଥିଲା ତା'ର ସେଇ ବିଧବା ଝିଅ ଶୟନରତା ସୋଦରା ଏବଂ ପିଲା ଦୁଇଟିଙ୍କୁ । ଗୋଟାଏ ଗଭୀର ବେଦନାରେ ଫାଟି ପଡ଼ୁଥିଲା ହୃଦୟ—ନୀରବରେ ସେ ଛାଡ଼ୁଥିଲା ଦୀର୍ଘ ନିଃଶ୍ୱାସ । ତା'ପରେ ଖାଲି ପାଣିରୁ ପେଟେ ପିଇ ଶୋଇ ଯାଉଥିଲା ବରଜୁ । କାରଣ, ସେ ପ୍ରାୟ ଅଧିକାଂଶ ଦିନ ଫେରୁଥିଲା ଶୂନ୍ୟ ହାତରେ ! ଆଜିକାଲିର ଉନ୍ନତ ଯାନ-ବାହନକୁ ଛାଡ଼ି ଲୋକେ ତା' ଦଦରା ଘୋଡ଼ାଗାଡ଼ିକୁ ବା ପଚାରିବେ କାହିଁକି ?

ଏଇମିତି ଦିନପରେ ଦିନ ଅତିକ୍ରାନ୍ତ ହେବାକୁ ଲାଗିଲା । ଧୀରେ ଧୀରେ ଦୁର୍ବଳ ହୋଇପଡ଼ିଲା ବରଜୁ । ଘୋଡ଼ା ଦି'ଟା ଖାଦ୍ୟାଭାବରୁ ମଲେ—ଗାଡ଼ି ହେଲା ଅକର୍ମଣ୍ୟ ।

ଦିନକର ଘଟଣା...... ।

ଚୁଲି ଉପରକୁ ପ୍ରାୟ ହାଣ୍ଡି ଯାଇ ନାହିଁ ତିନିଦିନ ହେଲା । ଦୁଇଦିନ ହେଲା ସୋଦରାକୁ ଝାଡ଼ା ହଉଚି—ଖାଲି ପତଳା ଝାଡ଼ା । ପେଟ ବେଜାଏ ଗରମ ହୋଇଯାଇଛି । ଛୁଆ ଦି'ଟା ବି ତା'ର କଚରାଲାଗି ହୋଇଗଲେଣି ! ରାତି ଆସି ହେଲାଣି ଅଧ । ଖଣ୍ଡିଆ ଶାଳପତ୍ର ପିକାରେ ନିଆଁ ଧରେଇ ବରଜୁ ବସିଚି କାନ୍ଥକୁ ଆଉଜି ମହାମେରୁ କପିଳାସର ନିର୍ବାକ୍ ଚୂଡ଼ାପରି । ରାଧୀ ବସିବସିକା

ଘୃମୋଉଚ । ଝିଅ ଆଉ ତା' ପିଲାଏ ଶୋଇ ପଡ଼ିଚନ୍ତି କେତେବେଳୁ ।

"ହଉଇଲେ !" ପିକାଟାକୁ ଦମେ ଟାଣିଦେଇ ନଜ ସ୍ତ୍ରୀ ରାଧୀ ଉଦ୍ଦେଶ୍ୟରେ କହିଲା ବରଜୁ, "କଅଣ କରିବା ମ ?"

ଥରେ ଆଖି ଖୋଲି ରାଧୀ ଅନେଇଁଲା ବୃଦ୍ଧ ସ୍ୱାମୀ ବରଜୁ ମୁହଁକୁ, ତା'ପରେ ପୁଣି ଆଖି ବୁଜିଲା ।

ବରଜୁ ପୁଣି କହିଲା, "ତଟେ ପର କ'ଣ ପଗୁରୁଚ ମୁଁ !!"

ଏକେବାରେ ରଗିଡ଼ଯାଇ ରାଧୀ କହିଲା—"କ'ଣ ? କହିବୁଟି !!"

"ଆଲେ, ଏ ଛୁଆଏ ବଞ୍ଚିବେ କେମିତି ?"

"ମୁଁ କ'ଣ କରିବି ?"

"ଆଲେ, କଣ କରିବା କହ !!"

ଏଥର ରାଧୀର ସ୍ୱର ଉଠିଲା ପଞ୍ଚମକୁ । କହିଲା, "ପୋଡ଼ା-ମୁହାଁ, ତୁ ଆଗେ ମଲେ ସବୁ କଣ୍ଟା ଯିବ । ଦୁନଆରେ ଏତେ ଲୋକ ମରୁଛନ୍ତି......ତତେ ମରଣ ହଉନାହିଁ ! ଛିଃ ତୋ ଜ-ନ-ମ...ଅଁ...ଅଁ... !"

ଅନ୍ତରାତ୍ମା ହାହାକାର କରିଉଠିଲା ବରଜୁର । ଆହତ ସ୍ୱରରେ ସେ କହିଲା, "ମୁଁ ମଲେ ତମେମାନେ ଯଦି ସୁଖରେ ରହିବ, ତାହେଲେ ମୁଁ ଯାଉଚ ଅଇସ୍ତି ମରିବ ।"

"ଯାଉନୁ ! ଧମ୍‌କଉଚୁ କାହାକୁ ?" ପୁଣି ଗର୍ଜିଉଠି କହିଲା—ରାଧୀ, "ଯା ବାଡ଼ପଡ଼ା, ଫୁଟି ଯା !!"

ନୀରବରେ ଏତକ ହଜମ୍ କରି ତଳକୁ ମୁହଁ ପୋତିଲା ବରଜୁ—ତା'ର ସେଇ କୋଟରଗତ ଆଖିରୁ ହନୁହାଡ଼ ଉପର ଦେଇ ଦୁଇଟୋପା ଲୁହ ଗଡ଼ି ଆସିଲା ।

ତା' ପରେ—

ସେ ଏକ ନିଃଶ୍ୱାସରେ କୁଡ଼ିଆରୁ ବାହାରି ଆସିଲା ପଦାକୁ ।

— ତିନି —

"ଠନ୍ ! ଠନ୍ ! ଠନ୍ !!!"

ରାତି ୩ଟା ବୋଲି ଘୋଷଣା କଲା ଷ୍ଟେସନ୍ ପାଖ ମିଲଟାରି କଲୋନିର ଘଣ୍ଟା । କୁଡ଼ିଆ ଦୁଆରେ କାହାର ଡାକ ଶୁଣି ଗୁଜୁରିକନି ନିଦଟା ଭାଙ୍ଗିଗଲା ରାଧୀର । ସେଇମିତି ଶୋଇରହି ସେ ପ୍ରଶ୍ନ କଲା—"କିଏ ସେ ?"

ଉତ୍ତର ଆସିଲା, "ମୁଁ, ଚଞ୍ଚଳ ତାଟି ଫିଟା ।"

ପୁଣି ବରଜୁର କଣ୍ଠସ୍ୱର ଶୁଣି ଜାଗ୍ରତ ହୋଇ ଉଠିଲା ରାଧୀର-ସୁପ୍ତକ୍ରୋଧ । ଉଠି, ତାଟି ଖୋଲି ସେ କହିଲା, "ପୋଡ଼ାମୁହାଁ, ମଣିଷକୁ ଟିକେ ଶୁଆଇ ଦବ ନାହିଁ !! ଯାଇଥିଲୁ ପରା କୁଆଡ଼େ ମରିବାକୁ ? ପୁଣି କୋଉଠି ଆଇଲୁ କାଇଁକି ?"

କିନ୍ତୁ ନ କହି ସେଇ ଅନ୍ଧକାର ଭିତରେ ମନେ ମନେ ହସିଲା ବରଜୁ । ହସୁ ହସୁ ରାଧୀଆଡ଼କୁ ହାତ ବଢ଼େଇ କହିଲା, "ନେଃ !"

ଓଜନ୍‌ଦାର୍ ମନିବ୍ୟାଗ୍‌ଟିକୁ ହାତକୁ ନେଇ, ଘୋଡ଼ାଗାଡ଼ିର ମଇଳା ଲଣ୍ଠନ ଜଳେଇ ରାଧୀ ଯାହା ଦେଖିଲା, ସେଥିରେ ତା'ର

ଜଳପ୍ଲାବିତ ମୁଖମଣ୍ଡଳ କିଛି ବେଳପାଇଁ ହୋଇ ଆସିଲା କମନୀୟ । ପାଖରେ ଠିଆହୋଇ ଅପଲକ ଆଖିରେ ବରଜୁ ଦେଖୁଥିଲା ରାଧୀର ସେଇ କ୍ଷଣିକ ପରିବର୍ତ୍ତନ ।

ଗଣା ସରିଲା ।

ମନିବ୍ୟାଗ୍‌ରେ ଥିଲା, ଶହେ ଟଙ୍କିଆ ନୋଟ୍ ପନ୍ଦର ଖଣ୍ଡ, ଦଶଟଙ୍କିଆ କୋଡ଼ିଏ ଖଣ୍ଡ, ରେଜା ଓ ଟଙ୍କିକିଆ ନୋଟ୍ ମିଶି ଥିଲା ପନ୍ଦର ଟଙ୍କାର । ଗାଏ ମୋଟ୍, ଏକହଜାର, ସାତଶହ ପନ୍ଦର ଟଙ୍କା ।

“ତମକୁ ମୋ'ରାଣ ସତ କହିବ ? ଏତେ ଟଙ୍କା କୋଉଠୁ ଆଣିଲ ? ପୁଅ ଯେମିତି କରୁଛି ସେଇମିତି.........!”

“ଓଃ ! ତା' ନାଁ ଧ'ନା । ଶଳା ଡ଼କେଇତ ଟାଏ ।”

ଆଉ କିଛି ନ କହି ମନିବ୍ୟାଗ୍‌ଟିକୁ ଅତି ଯତ୍ନର ସହିତ ନେଇ ପେଟରାରେ ରଖିଲା ରାଧୀ । ତା' ପରେ କହିଲା, “ଆଉ ଅଳପ ରାତି ଅଛି । ଆସ, ଶୋଇପଡ଼ ! ସକାଳୁ ଉଠିଲେ ରନ୍ଧା-ବଢ଼ା ହବ ।” ଏତକ କହି ପାରିଦେଲା ଦ'ଖଣ୍ଡ ଅଖା । ସେଇ ବିଛଣା ଉପରେ ନିଜକୁ ଲେଟାଇ ଦେଲା ବରଜୁ । ଗୁଇନିଦ ଲାଗି ଆସିଲା ବେଳକୁ ପାଦରେ କାହା ହାତର ସ୍ପର୍ଶ ଅନୁଭବ କଲା ବରଜୁ । ଆଖି ମେଲି ସେ ଦେଖିଲା, ରାଧୀ ଚପୁଚି ତା' ପାଦକୁ । ଦୀର୍ଘ ଆଠ ବର୍ଷ ପରେ ତା'ର ପାଦରେ ରାଧୀ ହାତ ଦେବା ସର୍ବପ୍ରଥମ । ହାୟରେ ଦାରିଦ୍ର୍ୟ ! କ'ଣ ତୁ ନ କରୁ ମଣିଷକୁ !!!

## —ଗୃହ—

ଘଡ ଜାଂଗୁଲୁ ଜାଂଗୁଲୁ ହଉଛ । ଆଚ୍ଛା ହେଇ ଫର୍ଚ୍ଚା ହେଇ-ନାଇଁ । ତାଟ ଖୋଲ ପଦାକୁ ଆସିଲ ବରଜୁ । କନ୍ତୁ······ ଏ କ'ଣ ! ଘଡ ନ ପାହୁଣୁ ପୁଲସ ବାଲା ? ତାର ମନେ ହେଲ, ଗତ ଘଡରେ ସେ ପାଇଥିବା ମନ୍ଦବ୍ୟାଗର୍ ଉଦ୍ଧାର ପାଇଁ ସେମାନେ ଆସୁଚନ୍ତ ବୋଧହୁଏ ! ଠିଆ ଠିଆ ସେଇଠି କାଠ ପାଲଟି ଗଲ ବରଜୁ ।

ପାଖକୁ ଆସି ଜମାଦାର ପଗ୍ଚରଲେ, "ହେ ବୁଢ଼ା ! ତୋ' ନାଁ କ'ଣ ? ବରଜୁ ସାମଲ ନା ??"

"ହଁ, ହଜୁର ।" ଧୀରେ ଉତ୍ତର ଦେଲ ବରଜୁ ।

"ତୋ' ଘର କଏ ? ଏଇ ଗୋଟାକ ?" ଆଉ କଛି ଉତ୍ତର ଦେଇ ପାରଲ୍ଲନ ବରଜୁ ।

ଦୁଇଜଣ ସିପାହିଙ୍କ ସଙ୍ଗେଢ ଜମାଦାର ବରଜୁର କୁଡ଼ିଆ ଭିତରକୁ ପଶିବାକୁ ଉପକ୍ରମ କରୁ କରୁ, ଭିତରୁ ଚମକ ଆସିଲ ଘଧୀ, ଯାଇ ଯାକ ସମସ୍ତେ ଜାଣନ୍ତ, ଘଧୀ ପାଟି ଯଦ ଫିଟିଚ, ସିଏ ଆଉ ସହଜେ ବନ୍ଦ ହେବାର ନୁହେଁ ! ଲାଟ୍ ସାହେବ ଆସୁନା କାହିଁକ, କେହ ତା' ଆଗରେ ସମଲା ପଡ଼ବେ ନାହିଁ । ସାକ୍ଷାତ୍ ଯେମିତ ଅଲ୍ ଇଣ୍ଡିଆ ରେଡ଼ିଓ ତା' ପାଟି ! ଟାଇମ୍ ନ ହେଲେ ଆଉ ବନ୍ଦ୍ ନ ହୁଏ ।

ଆଖି ଲାଲ୍ ଲାଲ୍ କର ଘଧୀ କହିଲ, "ହାଁ, ହାଁ, କୁଆଡ଼େ କୁଆଡ଼େ ?"

ଜମାଦାର ଠିଆହୋଇ ଯାଇ ଟିକେ ଘଗି ଗଲେ ।

"ସେ ନାକଆଖି ଆଉ କାହାକୁ ଦେଖେଇବ ଯାଅ ! ଏଇଟା କ'ଣ ଦାଣ୍ଡଘର ହେଇଚକି, ପଶି ଆଉଚ ? ଘରେ ମୋର ଯବାନ୍ ଝିଅ ଶୋଇଚ......ତମ ଆଖି ସବୁ କ'ଣ ଫୁଟି ଯାଇଚ ନା ତମା ନୋସଡ଼ ଯାଇଚ ? ଯାଅ ସିଆଡ଼େ ! ପଦାରେ ଠିଆ ହେଇ କଥାବାର୍ତ୍ତା କର । ଆ-ରେ.........କଅଁଳିଆ ନୁହାକୁ ବଗ୍ଡ଼ କାମୁଡ଼ୁଚ...... । ଯାଉଚ ନା......ଦେଖିବ ଅବକା !"

ସ୍ୱଧୀର ଏ ରୁଦ୍ରମୂର୍ତ୍ତି ଓ ଗର୍ଜନ ଶୁଣି ଜମାଦାର ଆଉ ଘରେ ପଶିବାକୁ ସାହସ କଲେ ନାହିଁ ।

ବରଡ଼ା ଚାଟକୁ ଦର ଆଉଜା କରି ତା'ର ଫାଙ୍କରୁ ସ୍ୱଧୀ ପଚ୍ଚରିଲା, "କଅଣ କହୁଚ, କହିବଟି ?"

ଜମାଦାର ଏକେବାରେ ରାଗି ଯାଇ କହିଲେ, "କୋଉଠି ଅଛି ସେ ଶଳା, ବଦ୍‌ମାସ୍ ?"

"କୋଉ ଶଳା, ବଦ୍‌ମାସ୍ ?"

"ତୋର ପୁଅ । ଜେଲ୍‌ଖାନାରୁ ଆସିବା ଦୁଇ ଦିନ ହେଇ ନାହିଁ, ଫେର୍ ଶଳା ଆମକୁ ହଇରାଣ୍ କରୁଛି !"

"ବଦ୍‌ମାସ୍‌କୁ ବଦ୍‌ମାସ୍‌ଙ୍କ ଘରେ ଖୋଜବ ଯାଅ ! ସେ୍ଟ ବଦ୍‌ମାସ୍‌ଙ୍କ ଘର ନୁହଁ ।" ଚାଟି ଦେଇ ଭିତରେ ଯାଇ ପାଟି କଲା ସ୍ୱଧୀ, "ସିଏ ତ କୋଉକାଲୁ ମୋ' ଘରୁ ଗଲାଣି ! ଇଏ ପୁଲିସ୍‌ବାଲାଏ ତା'ର ହାତରେ ସ୍ୱେଚ କରଉଚନ୍ତି, ଆଉ ଜାଣିନାହାନ୍ତି ସିଏ କୋଉଠି ଅଛି ? ନଈରେ ହଜେଇ ପୋଖରୀରେ ଖୋଜା ହଉଚ !!"

ପୁଲିସ ବାଲା ସାଇ ଲୋକଙ୍କଠାରୁ ପଚ୍ଚରି ବୁଝିଲେ, ବରଜୁର ପୁଅ ଆଉ ଏଠି ରହୁ ନାହିଁ । ବରଜୁ କୋଉକାଳୁ ତାକୁ ଘରୁ ବାହାର କରିଦେଇଛି !

ପୁଲିସ ବାଲାଏ ଗଲାପରେ ବରଜୁ ଦେହରେ ସତେ ଯେପରି ଜୀବନ ପଶିଲା ! ସେ ଭଗବାନଙ୍କ ଉଦ୍ଦେଶ୍ୟରେ ଦଣ୍ଡବତ ହୋଇ କହିଲା, "ପ୍ରଭୁ ! ତୁଇ ଏକା ବଡ଼ଲୋକ ।"

ନିତ୍ୟକର୍ମ ଶେଷକରି ନାଲି ଗାଁ'ରୁ ତାଡିଆଏ ପିଇ ବଜାରକୁ ସଉଦା ପାଇଁ ବାହାରିଲା ବରଜୁ । ଝିଅ ଆଉ ସାଧୀ ପାଇଁ ଦି'ଖଣ୍ଡ ଲୁଗା ଆଜି ନ ଆଣିଲେ ହବ ନାହିଁ । ତେଲ, ଲୁଣ, ଚାଉଳ, କାଠ, ପନ-ପରିବା ସବୁ ଆଣିବାକୁ ପଡ଼ିବ । ଆଜି ମନ ଖୁସିରେ ଶାନ୍ତିରେ ପେଟଭରି ଗ୍ରାସେ ଗ୍ରାସେ ସମସ୍ତେ ଦି'ଟା ଆଜି ଖାଇବେ ।

ଦିନ ବାରଟା ।

ବଜାର ସଉଦା ସାରି ବରଜୁ ଫେରିଆସିଲା କୁଡ଼ିଆକୁ । ସଉଦା ତକ ଝିଅ ହାତକୁ ଦେଇ କହିଲା, "ମା'ଲୋ ! ଖଣ୍ଡେ କ'ଣ ପକେଇ ଦିଅନ୍ତୁ କି; ମୁଁ ଟିକେ ପଡ଼ିଯାନ୍ତି ! ଧିଅଟା କାହିଁ କ'ଣ ହେଇ ଯାଉଚି !!"

× × × ×

ଦିନ ଗୋଟାକରୁ ଟପି ଗଲାଣି.........

ନଘୋଡ଼ ନଦରେ ଶୋଇଥିଲା ବରଜୁ । ରନ୍ଧାବଢ଼ା ସରିଗଲାଣି । ଝିଅ ସୋଦରା ଆସି ଡାକିଲା—"ବା ! ବା କଲେ !!" ବରଜୁ ଜବାବ ଦେଲା—"ଉଁ ?"

"ଉ'ଠୁ ଖାଇବୁ ।"

"ଆଗ ଛୁଆଙ୍କୁ ଖାଇବାକୁ ଦେଇ ସାର୍, ତୁ ଆଉ ବୋଉ ଖାଅ, ମୁଁ ଆଉ ଟିକେ ଯାଉ ଖାଇବ ।"

ସୋଦରାର ଶତ ଅନୁରୋଧ ବଫଳ ହେଲା ।

× × × ×

ସମସ୍ତେ ଖାଇ ପିଇ ସାରିଲେଣି । ନଦରୁ ଉଠିଲା ବରଜୁ । ମୁହଁ ହାତ ଧୋଇ ସାରିବା ପରେ ସୋଦରା ଆଣି ବାଢ଼ି ଦେଲା ଭାତ । ବରଜୁ ଭାତଗୁଣ୍ଡାଏ ପାଟିକି ନେବାର ଉପକ୍ରମ କରୁ କରୁ ବାହାରୁ କିଏ ଡାକିଲା, "ବରଜୁ ଭାଇ ଅଛୁ କରେ ?"

"କିଏ ସେ ?" ପାଟିକୁ ନେଉଥିବା ଭାତ ଗୁଣ୍ଡାକ ରହିଲା ସେଇ ଥାଳରେ—ପଦାକୁ ଆସିଲା ବରଜୁ । ଦାଣ୍ଡରେ ଠିଆ ହୋଇଥିଲା, ପଡ଼ଶା କଣା ଗୋଛେଇତ ।

ବରଜୁ ପଚାରିଲା, "କ'ଣ କରେ କଣା ?"

"ତୋ' ପୁଅ କଥା ଶୁଣିଲୁଣି ?"

"ନାଃ । କଅଣ ହେଉଛି ?"

"ମୁଁ ଅବକା ଟେସନ ଯାଇ ଥିଲି । କୁଆଡ଼େ କାଲି ରାତି ମେଲ୍‌ରେ ଗୋଟାଏ ବଡ଼ଲୋକ ଘର ମାଈକିନିଆକୁ କିଏ ଛୁରୀ ଭୁଷି ମାରିଦେଇଛି । ରେଳରାସ୍ତା ପାଖରେ ବହୁତ ଲୋକ ଜମିଥିଲେ ।

ମୁଁ ସେଠି ଯାଇ ଦେଖିଲି, ଟ୍ରଙ୍କ୍ ସୁଟ୍‌କେଶ ସବୁ ଭଙ୍ଗା ହୋଇ ପଡ଼ିଛି । କିଏ ଗୋଟିଏ କହିଲା, ଆସାମୀ ଧରା ପଡ଼ିଛି ବୋଲି । ଦେଖିଲି ବେଳକୁ ଆସାମୀ ଆଉ କେହି ନୁହେଁ, ତୋ'ର ପୁଅ । ଉଃ ! ଯୋଉ ମାଡ଼ରେ ତାକୁ··· କ'ଣ କହିବି ସେକଥା । ମୁନସିବାବୁ ତାକୁ ପଚାରିଲେ, କହ ଶଳା କୋଉଠି ପକେଇଲୁ ! ସିଏ କହିଲା, "ଝରକା ବାଟେ ଗଳେଇ ପକେଇଲି ।"

ବରଜୁ ବିସ୍ମିତ ହୋଇ ପ୍ରଶ୍ନ କଲା, "କ'ଣ ଗଳେଇ ପକେ-ଇଲା ଝରକା ବାଟେ ?"

କଣା କହିଲା, "କୁଆଡ଼େ ଗୋଟାଏ ମନିବ୍ୟାଗ୍ ! ସେଥିରେ କୁଆଡ଼େ ବହୁତ ଟଙ୍କା ଥିଲା !"

ବରଜୁ ଆଉ ରାମ କି ବିଷ୍ଣୁ ନ କହି ପଶିଲା କୁଡ଼ିଆ ଭିତରେ । କଣା ଗଲା ତା' ବାଟରେ ।

× × × ×

"କଲେ ବା ! ଖାଉନୁ କାଇଁକିମ ? ମାଛ ଗୁରା ପଚା ହେବଟିଲେ !"

"କ'ଣ ଖାଇବାଲେ ମା ?" ଏକ ଦୀର୍ଘଶ୍ୱାସ ଛାଡ଼ି କହିଉଠିଲା ବରଜୁ, "ମନ୍ଦିଏ ପାଣି ଦେଲୁ, ମୋ' ତଣ୍ଟି ଅଠା ହୋଇ ଯାଉଛି ।".

ପାଣିଗୁରାକ ପିଇ ନା ମ ! ମୋ, ରାଣ, ଦି'ଗୁଣ୍ଡା ଖାଇଦେ !"

"ନା, ଏ ଭାତକୁ ନେଇଯା ସୋଦର ! ମୁଁ ଏ ଭାତ ଖାଇବି ନାହିଁ । ମଣିଷମାରା ପରତଣ୍ଟିଶପା ଧନ ଇଏ । ଆଃ ! ପା–ଣି·····"

ବାସ୍, ଏତକ । ଆଜ କହି ପାରିଲିନ ବରଜୁ । ବସି ବସି ଟଳି ପଡ଼ିଲା ସେଇଠି ।

"ଇଲେ ବୋ-ଉ-ଲେଓ...ଓ...ଓ" ଚିତ୍କାର କରି ଉଠିଲା ସୋଦରୀ—ବୀଧୀ ଆସି କାନ୍ଦି ଉଠିଲା ଭେଁ କରି । କିନ୍ତୁ ସେତେବେଳକୁ ସବୁ ଶେଷ ହୋଇ ଯାଇଥିଲା । ବଢ଼ା ହୋଇଥିବା ଭାତ ଥାଳରେ ମାଛି ଭଣ ଭଣ ହେଉଥିଲେ—ଅପରାହ୍ନର ଖରା ନାଚୁଥିଲା ବାହାରେ । ସୋଦରୀ ପିଲା ଦୁଇଟିଙ୍କ କାନ୍ଧରେ ହାତ ରଖି ଅନେଇଥିଲା ବାହାରର ସେଇ ଖରାକୁ ।

କଟକ
ତା ୩ । ୧ । ୫୯



ମୁଦ୍ରାକର—ଦେବବ୍ରତ କର, ସୁଲେଖା ପ୍ରିଣ୍ଟର୍ସ, କଟକ-୨

